## କାହାଣୀ ପ୍ରକାଶନୀ ଦ୍ୱାରା ପ୍ରକାଶିତ
## ଏଇ ଲେଖକଙ୍କର ଅନ୍ୟାନ୍ୟ ଉପନ୍ୟାସ :

### ପ୍ରେମିକା

ଯେଉଁମାନେ ଥରେ ହେଲେହେଁ ପ୍ରେମରେ ନ ପଡ଼ି ପ୍ରତାରିତ ହୋଇ ନାହାନ୍ତି, ସେମାନଙ୍କ ଜୀବନ ହୁଏତ ବ୍ୟର୍ଥ ; କିନ୍ତୁ ପ୍ରେମରେ ବ୍ୟର୍ଥତା ନାହିଁ । ପ୍ରେମ ଜୀବନର ଏକ ଅମୃତ-ଉପଲବ୍ଧି ।

ଓଡ଼ିଆ ସାହିତ୍ୟର ସର୍ବାଧିକ ଲୋକପ୍ରିୟ ଉପନ୍ୟାସ, ସେଇ ଅମ୍ଳାନ ପ୍ରେମର ଅପୂର୍ବ ଆଲେଖ୍ୟ ।

ମୂଲ୍ୟ: ଚାଳିଶି ଟଙ୍କା ମାତ୍ର

### ସତୀ ଅସତୀ

ଶାରୀରିକ ସତୀତ୍ୱ ନୁହେଁ, ମାନବିକ ବ୍ୟକ୍ତିତ୍ୱ ହିଁ ନୂତନ ନାରୀର ସର୍ବଶ୍ରେଷ୍ଠ ଐଶ୍ୱର୍ଯ୍ୟ । ଆଧୁନିକ କାଳର ଏହିଭଳି ଜଣେ ବ୍ୟକ୍ତିତ୍ୱମୟୀ ନାରୀ ଜୀବନର ଅନ୍ତରଙ୍ଗ କାହାଣୀ ।

ମୂଲ୍ୟ :ପଚାଶ ଟଙ୍କା

### ରାଣୀ ମହୁମାଛି

ଜୀବିକା ଜୀବନ ନୁହେଁ; ଅଥଚ ଜୀବିକାକୁ ବାଦ ଦେଲେ ଜୀବନ ବିପନ୍ନ ।

ଏହି ବିପନ୍ନତା ବିରୁଦ୍ଧରେ ଏକ କର୍ମଜୀବୀ ନାରୀର ସଂଘର୍ଷମୟ ଜୀବନ କାହାଣୀ ଏଇ ପ୍ରେମୋପନ୍ୟାସ ।

ମୂଲ୍ୟ : ଚାଳିଶ ଟଙ୍କା ମାତ୍ର

### ବର୍ଣ୍ଣମାଳା

ଶ୍ରେଣୀବିଭକ୍ତ ସମାଜ, ଦ୍ୱିଧା-ବିଭକ୍ତ ବ୍ୟକ୍ତିତ୍ୱର ବର୍ଣ୍ଣିଳ ଅଭିବ୍ୟକ୍ତି ।

ମୂଲ୍ୟ : ପଇଁତିରିଶ ଟଙ୍କା ମାତ୍ର

ବନ୍ଧୁକର ନଳୀ ରାଜନୈତିକ କ୍ଷମତାର ଉତ୍ସ ହୋଇପାରେ; କିନ୍ତୁ ଚିଲମର ନଳୀ ହେଉଛି ସୁଖ ଓ ଶାନ୍ତିର ଉତ୍ସ । ... ଏହି ସ୍ଲୋଗାନ୍ ଦେଇ ଦିନେ ୟୁରୋପ, ଆମେରିକାର ସହସ୍ର ସହସ୍ର ସତେଜ ତରୁଣ, ସଦ୍ୟ-ତରୁଣୀ ପାରିବାରିକ, ସାମାଜିକ ଜୀବନର ସବୁ ସୁଖସ୍ୱାଚ୍ଛନ୍ଦ୍ୟକୁ ଫୁଃ କରି ଦେଇ ରାସ୍ତା ଉପରକୁ ଓହ୍ଲାଇ ଆସିଥିଲେ । ସେଇ ସମାଜ-ବିଦ୍ରୋହୀ, ବିଦ୍ରୋହିଣୀମାନଙ୍କୁ କେହି କହେ ହିପ୍‌ପି; ଆଉ କେହି କହେ ସେମାନେ ହେଉଛନ୍ତି ଏହି ଉଦ୍‌ଭ୍ରାନ୍ତ ପ୍ରଜନ୍ମର ଟ୍ରାଜେଡ଼ି ! ବିଟ୍‌ନିକ୍ !

ଐଶ୍ୱର୍ଯ୍ୟର ଅଳକାପୁରୀ ଛାଡ଼ି ଏହିଭଳି ଜଣେ ମାର୍କିନ ତରୁଣୀ ମୋକ୍ଷର ଅନ୍ୱେଷଣରେ ଇଣ୍ଡିୟା ଆସିଥିଲା । କାରଣ ତା ପକ୍ଷରେ ଭାରତବର୍ଷର ଗୌତମ ବୁଦ୍ଧ ହେଉଛନ୍ତି ପୃଥିବୀର ପ୍ରଥମ ହିପ୍‌ପି; ଯେ ରାଜସୁଖ ଛାଡ଼ି ନିର୍ବାଣର ସନ୍ଧାନରେ ସନ୍ନ୍ୟାସୀ ହୋଇଥିଲେ ! ସେହି ହିପ୍‌ପିଣୀ ପାଇଁ ଜୀବନର ପ୍ରତିଟି ମୁହୂର୍ତ୍ତକୁ ଉଷ୍ମ ଓ ଉତ୍ତେଜିତ କରି ରଖିବା ଥିଲା ମୋକ୍ଷ-ସ୍ୱରୂପ ! ଡ୍ରଗ୍‌ସ୍, ସେକ୍‌ସ୍, ଆଡ୍‌ଭେଞ୍ଚର୍ ଥିଲା ସେହି ମୋକ୍ଷପ୍ରାପ୍ତିର ପ୍ରଧାନ ଉପାୟ । କିନ୍ତୁ ଦିନେ ସେ ଅନୁଭବ କଲା ସୂର୍ଯ୍ୟ ଉପରେ ବରଫ ଜମି ଯାଇଛି ... ତାର ସ୍ନାୟୁଗ୍ରନ୍ଥିସବୁ ବରଫ ଭଳି ଥଣ୍ଡା !

ଗୋଆର ନୈସର୍ଗିକ ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ ଆସିଥିବା ଜଣେ ଇଣ୍ଡିୟାନ୍ ଟୁରିଷ୍ଟ ଏହି ନାମହୀନା ବିଦେଶିନୀ ସହିତ ଏକ ବିଚିତ୍ର ପରିବେଶରେ ଜଡ଼ିତ ହୋଇ ପଡ଼ିଲା । ସେମାନେ ସମୟର ଏକ ବିସ୍ଫୋରଣମୁଖୀ ଆଗ୍ନେୟଗିରି ଉପରେ ଜୀବନକୁ ଉପଭୋଗ କରିବା ପାଇଁ ଆନନ୍ଦର ବଣଭୋଜିରେ ମାତିଥିବାବେଳେ ଘୁମନ୍ତ ଆଗ୍ନେୟଗିରିର ନିଦ ଭାଙ୍ଗିଗଲା ...

ମାୟାବିନୀ ଗୋଆର ଯାଦୁକରୀ ପ୍ରାକୃତିକ ସୌନ୍ଦର୍ଯ୍ୟର ପୃଷ୍ଠଭୂମିରେ ରଚିତ ଓଡ଼ିଆ କଥାସାହିତ୍ୟର ଏହା ପ୍ରଥମ ଭ୍ରମଣୋପନ୍ୟାସ :

**'ଆଗ୍ନେୟଗିରିରେ ବଣଭୋଜି'**



ଗୋଆରେ ଯେ କୌଣସି ସମୁଦ୍ରବେଳାରେ କିଛି ହିପ୍‌ପିଙ୍କ ସହିତ ଦେଖାହେବ, ଏକଥା ମୁଁ ଜାଣିଥିଲି; କିନ୍ତୁ ଗୋଆ ଯିବା ରାସ୍ତାରେ ବମ୍ବେ ମାଡାମ କାମାରୋଡ୍ ବସ୍ ଷ୍ଟାଣ୍ଡରେ ଜଣେ ହିପ୍‌ପିଣୀ ମତେ ହଠାତ୍ ଚାଳିଶ ଟଙ୍କା ଧାର୍ ମାଗି ବସିବ; ଏକଥା କୌଣସି ଦିନ ମୋ କଳ୍ପନାଶକ୍ତିକୁ ସ୍ପର୍ଶ କରି ନଥିଲା ।

ହିପ୍‌ପିଣୀ ଜଣକ ଖୁବ୍ ଆତ୍ମବିଶ୍ୱାସର ସହିତ ମତେ ଅନୁରୋଧ କଲା– ମାତ୍ର ଚାଳିଶ ଟଙ୍କା । ମୁଁ ପାଞ୍ଜିମ୍‌ରେ ପହଞ୍ଚିବା ପରେ ସାଙ୍ଗେ ସାଙ୍ଗେ ଟଙ୍କା ଫେରସ୍ତ ଦେଇଦେବି ।

ଭଙ୍ଗା ଭଙ୍ଗା ହିନ୍ଦୀ ଭାଷାରେ ହିପ୍‌ପିଣୀ ମତେ ଟଙ୍କା ଧାର ମାଗି ସାରି ଅଳ୍ପ ଦୂରରେ ଠିଆ ହୋଇ ଥିବା ସେଇ କୃଷ୍ଣକାୟ ଦକ୍ଷିଣ-ଭାରତୀୟକୁ ଇଂରେଜୀରେ କହିଲା– ବ୍ୟସ୍ତ ହୁଅ ନାହିଁ । ତମ ହୋଟେଲ ବାକି ଟଙ୍କା ନଦେଇ ମୁଁ ପଳାଇ ଯାଉ ନାହିଁ । ମତେ ଖାଇଗଲା ଖାଇଗଲା ଆଖିରେ ଅନେଇଛ କାହିଁକି ?

ବିସ୍ମୟର ମୃଦୁ ଆଘାତରେ ଈଷତ୍ ବିଚଳିତ ହୋଇ ମୁଁ କହିଲି– ତମେ ତ ଆମଭଳି ଗୋଆ ଭ୍ରମଣରେ ଯାଉଛ । ଧାର୍ ଟଙ୍କା ଫେରସ୍ତ ଦେବାପାଇଁ ତମକୁ ସେଠାରେ ଟଙ୍କା ଦେବ କିଏ ? ତା'ଛଡ଼ା...

ମୋ ନିଜ ଉପରେ ମଧ୍ୟ ସେହି ମୁହୂର୍ତ୍ତରେ ଖୁବ୍ ରାଗ ହେଲା । ଅଳ୍ପ ସମୟ ଆଗରୁ ଏଇ ଶ୍ୱେତାଙ୍ଗିନୀ ଆଉ ଜଣେ ବସ୍ ଯାତ୍ରୀଙ୍କୁ ଟଙ୍କା ଧାର୍ ମାଗୁଥିବାବେଳେ ମୁଁ ତାକୁ ଅନାଇଥିଲି କାହିଁକି ? ମୋର ସେଇ ଚାହାଣିରୁ ସେ ହୁଏତ ଅନୁମାନ କରିପାରିଲା, ଟଙ୍କା ଧାର୍ ମାଗିଲେ ମୁଁ ମନା କରିବି ନାହିଁ ।

ହୋଟେଲରେ ଟଙ୍କା ବାକି ରଖି ଯେଉଁ ବିଦେଶିନୀ ଗୋଆ ଚାଲିଯିବାକୁ ବସିଛି, ସେ ଯେ ମୁଁ ଟଙ୍କା ଧାର୍ ଦେଲେ ମତେ ଫେରସ୍ତ ଦେବ; ଏଭିଳି ବିଶ୍ୱାସର ମଧ୍ୟ କୌଣସି କାରଣ ନ ଥିଲା । ମୋ ପକ୍ଷରେ ଚାଳିଶ ଟଙ୍କା ହୁଏତ କିଛି ନୁହେଁ; କିନ୍ତୁ ଅକାରଣରେ କୌଣସି ଶ୍ୱେତାଙ୍ଗିନୀକୁ ମୁଁ ଏ ଟଙ୍କା ଏପରି ଭାବରେ ଦେବାର କିଛି ମାନେ ହୁଏ ?



ହିପ୍‌ପିଣୀ ଜଣକ ନମ୍ର କଣ୍ଠରେ କହିଲା– ପାଞ୍ଜିମ୍‌ରେ ମୋର ଅନେକ ଫ୍ରେଣ୍ଡ୍ ଅଛନ୍ତି । ମୁଁ ସାଙ୍ଗେ ସାଙ୍ଗେ ଟଙ୍କା ଫେରସ୍ତ ଦେଇଦେବି । ପ୍ଲିଜ୍....

ମୁଁ ପ୍ରଶ୍ନିଳ ଦୃଷ୍ଟିରେ ମୋର ସହଯାତ୍ରିଣୀ ଲିପି ଆଡ଼କୁ ଅନେଇଲି ।.

ସେ କହିଲା– ଝିଅଟା ବିପଦରେ ପଡ଼ିଛି । ଗଲେ ପଛେ ଯାଉ, ଟଙ୍କାଟା ଦେଇ ଦିଅନ୍ତୁ....

ତା'ପରେ ଆଉ ଦ୍ୱିଧା କରିବାକୁ କିଛି ନଥିଲା । ମୁଁ ଚାଳିଶ ଟଙ୍କାର ନୋଟ୍ ସେ ଶ୍ୱେତାଙ୍ଗିନୀ ହାତକୁ ବଢ଼ାଇ ଦେବା ମାତ୍ରେ ତା'ର ଚିଲା ଆଖିରେ ହସର ଆଲୋକ ଝଲସି ଉଠିଲା ।

ବସ୍ ଛାଡ଼ିବା ପାଇଁ ତଥାପି ଆହୁରି ଅନେକ ସମୟ ଡେରି । ଜଣକ ପରେ ଜଣେ ବସ୍ ଯାତ୍ରୀ ସେ ଛୋଟ ଅପେକ୍ଷା-ଗୃହରେ ଭିଡ଼ ଜମାଇବା ଆରମ୍ଭ କରିଛନ୍ତି ।

ହୋଟେଲବାଲା ପାଖରୁ ଦାୟ-ମୁକ୍ତ ହୋଇ ହିପ୍‌ପିଣୀ ଜଣକ ଆମ ପାଖକୁ ଫେରିଆସିଲା ।

ଏଥର ହିନ୍ଦୀରେ ନୁହେଁ; ଇଂରେଜୀ ଭାଷାରେ କହିଲା– ଚାଲନ୍ତୁ କଫେ ଲେଖାଏଁ ଚାହା ଖାଇବା । ଲୋକଟା ଯେପରି ମୋ ପଛରେ ଲାଗିଥିଲା, ଭାବୁଥିଲି, ଟିକେଟ କରିଥିଲେ' ବି ଆଜି ହୁଏତ ବସ୍‌ରେ ପାଞ୍ଜିମ୍ ଯିବା ସମ୍ଭବ ହେବ ନାହଁ । ଆପଣ ରକ୍ଷା କରିଦେଲେ ।

ମୁଁ ମଧ୍ୟ ଚା'ର ତୃଷା ଅନୁଭବ କରିଥିଲି ।

ଆମ ସହିତ ଲିପି ମଧ୍ୟ ତା'ର ଚାରିବର୍ଷର ପୁଅକୁ ସାଙ୍ଗରେ ଧରି ଚା' ଖାଇବାକୁ ଆସିଲା ।

ମୁଁ ଚା' ପିଇବା ଅବସରରେ ସେ ହିପ୍‌ପିଣୀକୁ ପ୍ରଶ୍ନକଲି– ତମେ ତ ଆଉ ଜଣେ ବସ୍‌ଯାତ୍ରୀଙ୍କୁ ଟଙ୍କା ଧାର୍ ମାଗୁଥିଲ । ସେ ଦେଲା ନାହିଁ ?

ହିପ୍‌ପିଣୀ ମୃଦୁ ହସି ଉତ୍ତର ଦେଲା– ଦେବ ବୋଲି କହୁଥିଲା । କିନ୍ତୁ ଟଙ୍କା ପାଇଁ ଗୋଟାଏ ସର୍ତ୍ତ ରଖୁଥିଲା– ସେ ଟଙ୍କା ଦେବ, କିନ୍ତୁ ଫେରସ୍ତ ନେବ ନାହିଁ । ତା' ବଦଳରେ ତା ସହିତ ଗୋଟିଏ ରାତି ମତେ ପାଞ୍ଜିମ୍‌ରେ ହୋଟେଲରେ କଟାଇବାକୁ ହେବ । ହାଃ, ସେଇ ଆଦିମ କ୍ଷୁଧାର କଥା । ସେମାନଙ୍କର ସବୁ ଅଦ୍ଭୁତ ଧାରଣା, ଆମେରିକାନ୍ ପୁଅ–ଝିଅମାନେ ଫ୍ରି ସେକ୍‌ସ ପାଇଁ ହିପ୍‌ପୀ ହୋଇଛନ୍ତି ତା' ନହେଲେ ଧନର ପ୍ରାଚୁର୍ଯ୍ୟ ଛାଡ଼ି ସେମାନେ ଏଭଳି ଧର୍ମଛଡ଼ା ହୋଇ ଏ ଦେଶରେ ବୁଲନ୍ତେ କାହିଁକି ?

ହିପ୍‌ପିଣୀଜଣକ କଥାଗୁଡ଼ିକ ଏପରି ନିର୍ଲିପ୍ତ ଭାବରେ କହିଗଲା ଯେ ମୁଁ ଉତ୍ସାହିତ ହୋଇ ପ୍ରଶ୍ନ କଲି– ଅନ୍ୟ ଯାତ୍ରୀଜଣକ ଭଳି ମୁଁ ଯେ ସେଇଭଳି କିଛି ଅନ୍ୟାୟ ପ୍ରସ୍ତାବ କରିବି ନାହିଁ ତମେ ଜାଣିଲ କେମିତି ?

ସେ ସାମାନ୍ୟ ଉଚ୍ଚ କଣ୍ଠରେ ହସିଉଠି କହିଲା– ସବୁ ଇଣ୍ଡିୟାନ ସେଭଳି ନୁହନ୍ତି । ଅନେକ ଆମକୁ ସ୍ନେହ, ସହାନୁଭୂତି ଦେଖାନ୍ତି ବୋଲି ତ ଆମେ ନିଜ ଦେଶ, ଆତ୍ମୀୟସ୍ୱଜନ ଛାଡ଼ି ଏ ଦେଶକୁ ନିଜର କରି ରହିଛୁ ! ତା'ଛଡ଼ା ଆପଣଙ୍କ ସହିତ ସୁନ୍ଦରୀ, ତରୁଣୀ ପତ୍ନୀ, ପୁତ୍ର...

ହିପ୍‌ପିଣୀର କଥା ଶୁଣି ଲଜ୍ଜା ଓ ଅପମାନରେ ମୋ ମୁହଁ କଳାପଡ଼ିଗଲା ।

ଲିପିକା ମୋର ପତ୍ନୀ ନୁହେଁ; କେବଳ ଗୋଟିଏ ରାତ୍ରିର ସହଯାତ୍ରିଣୀ । ତା'ର ସ୍ୱାମୀ ପାଞ୍ଜିମ ସହରରେ ଜଣେ ଆର୍ମି ଡାକ୍ତର । ପ୍ଲେନ୍‌ରେ ତା'ର ଯିବାର ଥିଲା । ଟିକେଟ ପାଇଲା ନାହିଁ ବୋଲି ମୋ ସାଙ୍ଗରେ ବସ୍‌ରେ ଯାଉଛି । ତା'ର ଭାଇ ବମ୍ବେରେ ଜଣେ ବ୍ୟାଙ୍କ୍ ଅଫିସର । ଏକଦା ସେ ମୋର ସହପାଠୀ ଥିଲା । ସେଥିପାଇଁ ଲିପିକାକୁ ସେ ମୋ ସହିତ ପାଞ୍ଜିମ ପଠାଉଛି । ସେଠାରୁ ତାକୁ ନେଇ ମତେ ପାଞ୍ଜିମରେ ଛାଡ଼ିବାକୁ ହେବ । ଅଥଚ ଏ ହିପ୍‌ପିଣୀ ତାକୁ ମୋର ପତ୍ନୀ ବୋଲି...

ମୁଁ ପ୍ରତିବାଦ କରିବାକୁ ଯାଉଥିଲି ।

ମୋ ଡାହାଣ ବାହୁମୂଳକୁ ଚିମୁଟି ଦେଇ ଲିପି କହିଲା– ଥାଉ । ପ୍ରତିବାଦ କରନ୍ତୁ ନାଇଁ । ଝିଅଟା ଆଦୌ ମିଛ କହିନାଇଁ । ଆପଣଙ୍କର ତ ଏକଦା ମୋ ସହିତ ବାହାଘର ପ୍ରସ୍ତାବ ପଡ଼ିଥିଲା...

ଏଇଟା ମଧ୍ୟ ଲିପିକାର ଏକ ମନଗଢ଼ା ଅଭିଯୋଗ ।

ମୁଁ କଲେଜରେ ପଢୁଥିଲାବେଳେ ଯେତେବେଳେ ତା' ଭାଇ ସହିତ ତାଙ୍କ ଘରକୁ ଯାଉଥିଲି, ସେତେବେଳେ ଲିପିକା ଥିଲା ଫ୍ରକ୍‌ପିନ୍ଧା କିଶୋରୀ, ସ୍କୁଲ ଛାତ୍ରୀ । ସେ ଶାଢ଼ୀ ପିନ୍ଧିବାର ଅନେକ ପୂର୍ବରୁ ମୁଁ ଏହ୍ଲାବାଦ୍ ଚାଲିଯାଇଥିଲି ଏମ୍.ଏ. ପଢ଼ିବାକୁ । ତା' ସହିତ ଆଉ କେବେ ଦେଖା ହୋଇନି । ଦୁଇବର୍ଷ ତଳେ ଦେଖାହେଲା ବେଳକୁ ସେ ଗୋଟିଏ ପୁତ୍ର ସନ୍ତାନର ଜନନୀ ହୋଇ ସାରିଛି । ଅଥଚ ତା'ର ବଦ୍ଧମୂଳ ଧାରଣା ଏକଦା ତା'ର ଭାଇ ପ୍ରଶାନ୍ତ ମୋ ସହିତ ବିବାହ ପ୍ରସ୍ତାବ ଆଣିଥିଲା; ଆଉ ମୁଁ କୁଆଡ଼େ ସେ ପ୍ରସ୍ତାବକୁ ହସି ହସି ଉଡ଼ାଇଦେଇଥିଲି !

ବସ୍‌ର ହର୍ଣ୍ଣ ଶୁଣାଗଲା ।

ମୁଁ ଦୋକାନୀକୁ ଚା'ର ପଇସା ଦେବାକୁ ଯାଉଥିଲି; ହିପ୍‌ପିଣୀ ଜଣକ ବାଧାଦେଲା ।

କହିଲା– ଧାର୍ ଶୁଝିବାକୁ ମୋ ପାଖରେ ଚାଳିଶ ଟଙ୍କା ନଥିଲା ବୋଲି ଚା' ପଇସା ଦେବାକୁ ଗୋଟିଏ ଟଙ୍କା କଅଣ ନାହିଁ ? ଏଇ ଦେଖନ୍ତୁ ...

ଅବଲୀଳା କ୍ରମେ ଗୋଟିଏ ପାଞ୍ଚଟଙ୍କିଆ ନୋଟ୍ କାଢ଼ି ସେ ଚା' ଦୋକାନୀ ଆଡ଼କୁ ବଢ଼ାଇଦେଲା ।

ଆମେ ସମସ୍ତେ କିଛି ସମୟପରେ ବସ୍ ଭିତରକୁ ଫେରିଆସିଲୁ ।

ବମ୍ବେର ଆକାଶ ସେତେବେଳ ପର୍ଯ୍ୟନ୍ତ ଅସ୍ତ-ସୂର୍ଯ୍ୟର କିରଣରେ ଆରକ୍ତ ଦେଖାଯାଉଥିଲା । ଅଥଚ ଘଣ୍ଟାରେ ଛଅଟା ବାଜିବାକୁ ଆଉ ସାତ ମିନିଟ ବାକି ।

ଗାଡ଼ି ଛାଡ଼ିବାର ଶବ୍ଦ ହେଲା । ଇଂଜିନ୍‌ର ଗର୍ଜନ; ବାହାରେ ଥିବା ଯାତ୍ରୀମାନଙ୍କ ବ୍ୟସ୍ତ-ବିବ୍ରତ ଭାବରେ ବସ୍ ମଧ୍ୟରେ ପ୍ରବେଶ କରିବାର କୋଳାହଳ ଭିତରେ ଲିପି କୋଳରେ ଚାରି ବର୍ଷର ଲର୍ଡ ହଠାତ୍ କାନ୍ଦିଉଠିଲା । ଆଉ ଠିକ୍ ସେଇ ସମୟରେ ଆମ ସିଟ୍‌ଠାରୁ ଦୁଇଟି ସିଟ୍ ଆଗରେ ବସିଥିବା ସେଇ ଶ୍ୱେତାଙ୍ଗିନୀ ଉଠି ଆସି ଲର୍ଡକୁ ନକାନ୍ଦିବା ପାଇଁ ଲାଞ୍ଚ ଯାଚିଲା ଗୋଟାଏ ଲାଲ୍ ରଙ୍ଗର ଷ୍ଟିକ୍ ଲଜେନ୍‌ସ...

ଆଉ ଲର୍ଡ ସାଙ୍ଗେ ସାଙ୍ଗେ କାନ୍ଦ କରି ଉହୁଁକି ଗଲା ସେଇ ଝିଅଟାର କୋଳକୁ । ମୁଁ ବାଧା ଦେଉଥିଲି; ଲିପି ମନାକଲା । କହିଲା— ଯାଉ, ସେ ହିପ୍‌ପିଣୀ ପାଖରେ ବସୁ । ମୁଁ ଜାଣେ, ବଡ଼ ହେଲେ ସେ ହିପ୍‌ପି ହେବ ।

ମୁଁ ହସିଉଠିଲି ଲିପିର କଥା ଶୁଣି ।

ଗାଡ଼ି ଦୌଡ଼ିବା ଆରମ୍ଭ କରିଦେଇଥିଲା ।

ମୁଁ ଲକ୍ଷ୍ୟ କଲି, ହିପ୍‌ପିଣୀ ଖୁବ୍ ନିଃସ୍ୱାର୍ଥପର ଭାବରେ ଲର୍ଡକୁ ତା' ସିଟ୍‌କୁ ନେଇ ନାହିଁ । ବାତ୍ସଲ୍ୟ ଅପେକ୍ଷା ଲର୍ଡକୁ ନିଜ ପାଖକୁ ନେବାରେ ତା'ର ଏକ ଜରୁରୀ ଆବଶ୍ୟକତା ଥିଲା । ସେ ଜଣେ ନିଗ୍ରୋ ଢାଞ୍ଚାର ଦକ୍ଷିଣ-ଭାରତୀୟ ଯାତ୍ରୀ ପାଖରେ ବସିଛି । ଦୁଇ ଜଣିକିଆ ସିଟ୍, ସେଇ କୃଷ୍ଣକାୟ ଲଣ୍ଡିତ-ମସ୍ତକ ଦକ୍ଷିଣ ଭାରତୀୟ ଜଣକ ଜାଣି ଜାଣି ସେ ହିପ୍‌ପିଣ ସହିତ ଘନିଷ୍ଠ ହୋଇ ବସିବାକୁ ଯତ୍ନ କରୁଥିଲେ । ଲର୍ଡକୁ ମଝିରେ ବସାଇ ଦେଇ ସେଇ ଶ୍ୱେତାଙ୍ଗିନୀ ସହଯାତ୍ରୀଙ୍କଠାରୁ ନିଜର ଦୈହିକ ଦୂରତ୍ୱ ବଢ଼ାଇଦେଲା ।

ମୁଁ ଲିପିକୁ ଅନାଇ ମନ୍ତବ୍ୟ କଲି, ଝିଅଟା ଖୁବ୍ ବୁଦ୍ଧିମତୀ, କିନ୍ତୁ ଲର୍ଡ ଯେ ଏତେ ସହଜରେ କିପରି ଜଣେ ବିଦେଶିନୀ ପାଖକୁ ଚାଲିଗଲା; ସେ କଥା ଭାବି ମୁଁ ଆଶ୍ଚର୍ଯ୍ୟ ହେଉଛି ।

ଲିପି କହିଲା— ଗୋଆରେ ଯେଉଁ ନର୍ସ ପାଖରେ ସେ ଦୁଇବର୍ଷ ଲାଳିତପାଳିତ ହୋଇଛି, ସେ ମଧ ଥିଲା ଜଣେ ଶ୍ୱେତାଙ୍ଗିନୀ । ତା'ର ଅବଚେତନ ମନରେ ହୁଏତ ଶ୍ୱେତାଙ୍ଗିନୀମାନଙ୍କ ପ୍ରତି ଏକ ଆତ୍ମୀୟତାର ଆକର୍ଷଣ ରହିଯାଇଛି ।

ଲିପିର ବି.ଏ. ପଢ଼ିଲାବେଳେ ମନସ୍ତତ୍ତ୍ୱ ଅନର୍ସ ଥିଲା । ସବୁ କଥା ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ନେଇ ବିଚାର କରିବା ତାର ବ୍ୟକ୍ତିତ୍ୱର ଅନ୍ୟ ଏକ ଉଜ୍ଜ୍ୱଳ ଦିଗ ।

ମୁଁ କହିଲି— ଲର୍ଡ ଚାଲିଗଲା ପରେ କିନ୍ତୁ ଆମ ଦୁଇଜଣଙ୍କ ଭିତରେ ବ୍ୟବଧାନର ଦୂରତ୍ୱ କମିଗଲା । ଆଉ କିଛି ସମୟ ପରେ ମତେ ନିଦ ଆସିଯିବ । ଚଳମାନ ବସ୍ ଭିତରେ ବସିଥିଲେ ମଧ୍ୟ ମୋର ସୁନିଦ୍ରାରେ କୌଣସି ଅସୁବିଧା ହୁଏନାହିଁ । ଆଉ ନିଦ୍ରା ଅଚେତନ ଅବସ୍ଥାରେ ଯଦି ମୋର ମୁଣ୍ଡ କିମ୍ବା ହାତ ତାମ କାନ୍ଧ ଉପରେ ପଡ଼ିଯାଏ, ମତେ ତମେ ନିଜ ଗୁଣରେ କ୍ଷମା କରିଦେବ । ଅନ୍ତତଃ ଏପରି କିଛି ଘଟିଥିଲା ବୋଲି ଡାକ୍ତର ସାହେବଙ୍କୁ କହିବ ନାହିଁ ।

ମୋ କଥା ଶୁଣି ଲିପି ଲଜ୍ଜାରେ ଅପ୍ରତିଭ ହେବା ବଦଳରେ ଉତ୍ସାହିତ ହୋଇ କହିଲା– ଡାକ୍ତର ଚୌଧୁରୀ କିନ୍ତୁ ସେ କଥା ଜାଣିଲେ ମଧ୍ୟ କିଛି ମନେ କରିବେନାହିଁ । ଆପଣ ସେ ବିଷୟରେ ନିଶ୍ଚିତ ରହିପାରନ୍ତି । ସଂସାରରେ ଏପରି ଜଣେ ଜଣେ ପୁରୁଷ ଥାଆନ୍ତି ଯେଉଁମାନେ ନିଜ ସ୍ତ୍ରୀର ଅନ୍ୟ କୌଣସି ପୁରୁଷ ସହିତ ଘନିଷ୍ଠତା ଥିବା କଥା ଜାଣିଲେ କ୍ରୋଧରେ ପ୍ରଜ୍ୱଳିତ ହେବା ଅପେକ୍ଷା ନିଜ ପତ୍ନୀପ୍ରତି ଅଧିକ ଆସକ୍ତି ଅନୁଭବ କରନ୍ତି । ମୋ ସ୍ୱାମୀ ସେହିଭଳି ଜଣେ ଉଦାର-ହୃଦୟର ପୁରୁଷ । ଅବଶ୍ୟ ତାଙ୍କୁ ବାଦ୍‌ଦେଲେ ମୋ ଜୀବନରେ ଅନ୍ୟ କୌଣସି ଆପେୟାର ନାହିଁ । ଯଦି ଆପଣଙ୍କୁ ନେଇ ସେପରି କିଛି ଘଟେ, ମୁଁ ଖୁବ୍ ଖୁସିହେବି କିନ୍ତୁ ସେଭଳି କିଛି ସତରେ କଅଣ ଘଟିବ ?

ଲଘୁ ପରିହାସରେ ଲିପିକୁ ମୁଁ ନିଦ୍ରା ଅଚେତନ ଅବସ୍ଥାରେ ତା କାନ୍ଧ ଉପରକୁ ଝୁଙ୍କି ପଡ଼ିପାରେ ବୋଲି କହିଥିଲି ।

ନିର୍ଜନ ରାତିରେ ଭାରତବର୍ଷର ବହୁ ଜନପଦ, ଘାଟି ରାସ୍ତାରେ ବସ୍‌ରେ ମୁଁ ଯିବା ଆସିବା କରିଛି । ବସ୍ ଭିତରେ ନିଶ୍ଚିନ୍ତ ନିଦରେ ଶୋଇଛି; କିନ୍ତୁ କୌଣସି ସହଯାତ୍ରୀ କେବେହେଲେ ଅଭିଯୋଗ କରିନାହାନ୍ତି ଯେ ମୋ ଦେହଭାର ସେମାନଙ୍କ କାନ୍ଧରେ ଆଶ୍ରୟ ନେଇଛି ।

ମୁଁ ଲିପିକୁ ଲକ୍ଷ୍ୟ କରି କହିଲି– ଅନ୍ୟ ଜଣେ ପୁରୁଷ ପାଖରେ ନିଜ ସ୍ୱାମୀଙ୍କ ନିନ୍ଦା କରିବା ଆଦୌ ଭଲ ନୁହେଁ । ତମର ମିଷ୍ଟର ଭାରତୀୟ ସେନାବାହିନୀର ଜଣେ ସୁଦକ୍ଷ ଡାକ୍ତର । ବଙ୍ଗଳା ଦେଶ ଅଭିଯାନ ସମୟରେ ସେ ଅନେକ ମୁମୂର୍ଷୁ ସୈନ୍ୟଙ୍କୁ ଜୀବନ୍ୟାସ ଦେଇ ଭାରତୀୟ ସୈନ୍ୟମାନଙ୍କ ଅଗ୍ରଗତି ଆଉ ବିଜୟରେ ସହାୟତା କରିଛନ୍ତି ବୋଲି ପ୍ରଶଂସିତ ହୋଇଛନ୍ତି । ତାଙ୍କର ନିନ୍ଦା ଶୁଣି ମୁଁ ଖୁବ୍ ଖୁସି ହେବି ବୋଲି ଭାବୁଛ କାହିଁକି ?

ଲିପି ମୃଦୁ ହସି ପ୍ରତିବାଦ କଲା– ମୁଁ ନିଜ ସ୍ୱାମୀଙ୍କ ନିନ୍ଦା କଲି କେତେବେଳେ ? ବର ପ୍ରଶଂସା କଲି । ନିଜ ସ୍ତ୍ରୀ ସହିତ ଅନ୍ୟ କେହି ପୁରୁଷ ଘନିଷ୍ଠ ହେଲେ ଯେଉଁ ସ୍ୱାମୀମାନେ ଈର୍ଷା ଓ ଅପମାନରେ ଜର୍ଜରିତ ହୁଅନ୍ତି, ସେମାନେ ସାଧାରଣ ପୁରୁଷ; କିନ୍ତୁ ଡାକ୍ତର ଚୌଧୁରୀ ଜଣେ ମହାପୁରୁଷ । ନିଜ ସ୍ୱାମୀଙ୍କୁ ପୁରୁଷ ଆସନରୁ ଉଠାଇ ମହାପୁରୁଷ ଆସନରେ ବସାଇବାକୁ କଅଣ ନିନ୍ଦା କୁହାଯାଇପାରେ ?

ଲିପିର କଥା ଶୁଣି ମୁଁ ମନେ ମନେ ଭୟଭୀତ ହୋଇଗଲି ।

ଡାକ୍ତର ଚୌଧୁରୀ ହୁଏତ ଗୁଳିବିଦ୍ଧ ବହୁ ସୈନ୍ୟଙ୍କୁ ଜୀବନ୍ୟାସ ଦେଇଛନ୍ତି; କିନ୍ତୁ ନିଜ ଦାମ୍ପତ୍ୟ-ଜୀବନର ସ୍ୱାସ୍ଥ୍ୟ ଯେ କେଉଁ ସଂକ୍ରାମକ ରୋଗର ଜୀବାଣୁ ଦ୍ୱାରା ଆକ୍ରାନ୍ତ ହୋଇ ରୁଗ୍‌ଣ ହୋଇପଡ଼ିଛି, ସେଥିପ୍ରତି ସେ ଲକ୍ଷ୍ୟ ରଖି ପାରିନାହାନ୍ତି । ସେମାନଙ୍କ ଦାମ୍ପତ୍ୟ ଜୀବନର ସେତୁବନ୍ଧ ନିର୍ମାଣ କାହାଣୀ ମତେ ଜଣାନାହିଁ । ତେଣୁ ସେ ସେତୁବନ୍ଧରେ ଛିଦ୍ର ସୃଷ୍ଟି ହୋଇଛି କି ନାହିଁ; ସେ ବିଷୟରେ ମୁଣ୍ଡ ଘୂରାଇବାକୁ ମୋର କୌଣସି ପ୍ରୟୋଜନ ନାହିଁ ।

ମୁଁ ଯାଯାବର । ଦୂର ଅଦେଖା ବଣପାହାଡ଼, ନଦୀଜଳ, ବାଲୁଚର, ବୋଳାଭୂଇଁ ମତେ ହାତ ଠାରି ଡାକେ । ସେଇ ଅଜଣା ଆକର୍ଷଣରେ ସମ୍ମୋହିତ ହୋଇ ମୁଁ ଗୋଟିଏ ପରିଚିତ ସ୍ଥାନରୁ ଟାଣି ହୋଇଯାଏ ଆଉ ଗୋଟିଏ ଅପରିଚିତ ଭୂଇଁକୁ । ବାଟଚଲା ମୋର ଜୀବନର ଧାରା । ବାଟ ଚାଲୁ ଚାଲୁ ଅନେକ ଥର ବାଟ ମଧ୍ୟ ମୁଁ ଭୁଲିଛି । ଯିଏ ଚାଲେ, ସିଏ ଭୁଲେ । ଯିଏ ଅଚଳ ସେ ଅଚଞ୍ଚଳ; କିନ୍ତୁ ଯିଏ ଭୁଲେ, ସେ ଅନ୍ୟାକୁ ଭୁଲାଇ ଜାଣେ ନାହିଁ ।

ଲିପି ମୋ ଯିବା ରାସ୍ତାର ଗୋଟିଏ ରାତିର ସାଥୀ । ଦିନେ ତା'ର ଭାଇ ସହିତ ମୋର ଥିଲା ଘନିଷ୍ଠ ଆତ୍ମୀୟତା । ସେଇ ସୂତ୍ରରେ ନିଜ ଭଉଣୀ ଓ ଭଣଜାକୁ ପରମ ବିଶ୍ୱାସରେ ସେ ମୋ ସହିତ ତା' ଭିଣୋଇ ପାଖକୁ ପଠାଉଛି । ସକାଳେ ପାଞ୍ଜିମ୍‌ରେ ସେମାନଙ୍କୁ ଭଲରେ ଭଲରେ ପହଞ୍ଚାଇ ଦେଇ ବନ୍ଧୁତ୍ୱର ଋଣ ମୁଁ ଶୁଝିଦେବି । ମଝିରେ ତା ଭଉଣୀ ଓ ଭିଣୋଇଙ୍କ ବ୍ୟକ୍ତିଗତ ଜୀବନ ଭିତରେ ନାକ ଗଳାଇ ମୋର ଲାଭ କ'ଣ ?

ବସ୍ ଭିତରେ ଧୂମପାନ ନିଷେଧ ବୋଲି ଲେଖାଥିଲେ ସୁଦ୍ଧା ଅନେକ ଯାତ୍ରୀ ସିଗାରେଟ ଟାଣୁଥିଲେ । ମୁଁ ମଧ୍ୟ ଖଣ୍ଡେ ସିଗାରେଟ୍‌ରେ ନିଆଁ ଧରେଇଲି ।

ସନ୍ଧ୍ୟା ହୋଇଯାଇଛି ।

ବସ୍ ଭିତରେ ଆଲୋକ ଜଳିଉଠିଛି ।

ବମ୍ବେ ନଗରୀର ସୀମା ଅତିକ୍ରମ କରି ଆମର ବସ୍ ଛୁଟି ଚାଲିଛି ପଶ୍ଚିମଘାଟ ପର୍ବତମାଳାର ପାର୍ବତ୍ୟ ରାସ୍ତା ମଧ୍ୟଦେଇ ।

ଲିପି ଉଠି ଠିଆହେଲା ।

ତା'ପରେ ବସି ପଡ଼ି କହିଲା– ଲର୍ଡ ସେ ହିପ୍‌ପିଣୀ ସହିତ ବେଶ୍ ଜମାଇଦେଇଛି । ତା'ର ଖାଇବା ବେଳ ହେଲାଣି । ଏ ବୋତଲ-କ୍ଷୀର ତାକୁ ଦେଇ ଆସେ ।

ଲିପିକୁ ମୁଁ ଯିବାକୁ ଦେଲିନାହିଁ । ନିଜେ ଉଠିଯାଇ ଦେଇଆସିଲି । କ୍ଷୀର-ବୋତଲ ମୋ ହାତରୁ ନେଲାବେଳେ ସେ ହିପପିଣୀ ମୋ ମୁହଁକୁ ଥରେ କୌତୂହଳୀ ଦୃଷ୍ଟିରେ ଚାହିଁ ନିଜ ଦୁଇ ଉନ୍ନତ ଶଙ୍ଖ ଧବଳ ସ୍ତନ ଉପରେ ଲର୍ଡକୁ ଚାପି ଧରିଲା ।

ଲର୍ଡ଼ ଆଖି ମିଟିମିଟି କରି ହସୁଥିଲା ।

ମୁଁ ପୁଣି ଆମ ସିଟ୍‌କୁ ଫେରିଆସିଲି । ଲିପି ମୁହଁରେ ଏକ ଅଜ୍ଞାତ ଆନନ୍ଦର ହସ ଲାଖି ରହିଥିଲା; ମୁହଁର ମାଂସପେଶୀର ତ୍ୱକ୍ ସହିତ ମିଶି ନଥିବା ଧଳା ପାଉଡ଼ର ଦାଗ ଭଳି !

ମୁଁ ତାକୁ ଆକ୍ଷେପ କରି କହିଲି– ମୋର ଭୟହେଉଛି ତମେ ଯଦି ନିଜର ସ୍ୱାଚ୍ଛନ୍ଦ୍ୟ ପାଇଁ ଲର୍ଡକୁ ଏପରି ବିଦେଶିନୀ ଆୟା କିମ୍ବା ହିପ୍‌ପିଣୀ ସହଯାତ୍ରିଣୀର ହେପାଜତ୍‌ରେ ଛାଡ଼ିଦିଅ, ଦେଖିବ, ଦିନେ ସତକୁ ସତ ସେ ହିପ୍‌ପି ହୋଇଯିବ । ସାମାଜିକ ସଂପର୍କର ବିଚ୍ଛିନ୍ନତାରୁ ହିଁ ଏ ହିପ୍‌ପି ସଭ୍ୟତାର ଅଭ୍ୟୁଦୟ....

ଲିପି ମୋ କଥାରେ କାନ ଦେଲାନାହିଁ ।

ବରଂ କଥାଟାକୁ ଏଡ଼ାଇ ଯିବାପାଇଁ କହିଲା– ଛୁଆଙ୍କୁ କୋଳରେ ଜାକି ବସିଲେ ସେମାନେ ଘରପଶା ହୋଇଯିବେ । ଲର୍ଡକୁ ମୁଁ ଶାଢ଼ୀ କାନିରେ ବାନ୍ଧି ରଖିବାକୁ ଚାହେଁ ନାଇଁ । ଯଦି ସେ ହିପ୍‌ପି ହେବାକୁ ଚାହେଁ; ହେଉ । ମୋର ତ ବେଳେ ବେଳେ ଏଇ ବନ୍ଧନ-ମୁକ୍ତ ହିପ୍‌ପି-ହିପ୍‌ପିଣୀମାନଙ୍କ ସହିତ ଚଢ଼େଇ ଭଳି ଉଡ଼ିଯିବାକୁ ଇଚ୍ଛା ହୁଏ ।

ମୁଁ ଚୁପ୍ ହୋଇଗଲି । ଲିପିର ଇଚ୍ଛାରେ ବାଧା ଦେବାକୁ ମୁଁ କେହି ନୁହେଁ । ତା ସହିତ ମୋର ସମ୍ପର୍କ ସେତେ ଘନିଷ୍ଠ ଆଉ ଆନ୍ତରିକ ମଧ ନୁହେଁ । ପ୍ରଶାନ୍ତ ସହିତ ଛାତ୍ର ଜୀବନରେ ତାଙ୍କ ଘରକୁ କେତେଥର ଆସିଲାବେଳେ ତା'ସହିତ ଯେଉଁ ରିଚୟ ହୋଇଥିଲା; ମୁଁ ଏହ୍ଲାବାଦ ଚାଲିଗଲା ପରେ ସେ ସମ୍ପର୍କ ମଧ ଶିଥିଳ ହୋଇଯାଇଥିଲା । ଅନେକ ବର୍ଷ ପରେ ତା' ସହିତ ବମ୍ବେରେ ଦେଖା ।

ମୁଁ ପଛସିଟ୍‌କୁ ଆଉଜି ବସି ଲିପିଠାରୁ ନିଜର ଶାରୀରିକ ଦୂରତ୍ୱ ଯଥାସମ୍ଭବ ରକ୍ଷା କରିବାକୁ ଚେଷ୍ଟା କଲି ।

ବମ୍ବେରୁ ଗୋଆର ରାଜଧାନୀ ପାଞ୍ଜିମ୍‌ର ଦୂରତ୍ୱ ପ୍ରାୟ ପାଞ୍ଚଶହ ନବେ କିଲୋମିଟର । ସାରା ରାତି ବସ୍‌ରେ ଲିପି ପାଖରେ ବସି ବସି କଟାଇବାକୁ ହେବ । ଯଦି ମୁଁ ସେ ହିପ୍‌ପିଣୀ ସିଟ୍‌କୁ ଚାଲିଯାଆନ୍ତି, ଆଉ ସେ ଲିପି ପାଖକୁ ମୋ ସିଟ୍‌କୁ ଚାଲିଆସନ୍ତା; ତାହାହେଲେ ଏ ଅକାରଣ୍ୟ-ଅସ୍ୱସ୍ତିରୁ ଆମେ ସମସ୍ତେ ମୁକ୍ତି ପାଇଯାଆନ୍ତୁ । କିନ୍ତୁ ଏ ପ୍ରସ୍ତାବ ଲିପି ପାଖରେ ଉପସ୍ଥାପିତ କରିବା ପାଇଁ ସାହସ ହେଲା ନାହିଁ । ଲିପି ଭିନ୍ନ ଧାତୁରେ ଗଢ଼ା ଝିଅ । ହିପ୍‌ପିଣୀକୁ ସେ ହୁଏତ ସହ୍ୟ କରି ପାରିବ ନାହିଁ । ଗପ କରିବା ପାଇଁ ମୋ ଭଳି ତା'ର ଜଣେ ପରିଚିତ ଲୋକ ଦରକାର । ସଂସାରରେ ଅନେକ ସ୍ତ୍ରୀଲୋକ ଅଛନ୍ତି ଯେଉଁମାନେ ଖାଦ୍ୟ ନଖାଇ ଉପବାସ ରହିଯାଇ ପାରନ୍ତି; କିନ୍ତୁ ବକର ବକର ନହେଲେ ସେମାନେ ଦିନଟିଏ ସୁଦ୍ଧା ଚଳି ପାରନ୍ତି ନାଇଁ !

ଲିପି ବୋଧହୁଏ ମୋ ମୁହଁର ରେଖାରୁ ମନସ୍ତାତ୍ତ୍ୱିକ ଅନ୍ତର୍ଦୃଷ୍ଟି ଦେଇ ମନର ଭାବନା ଜାଣିପାରିଲା ।

କହିଲା– ଆପଣ ମୋ ପାଖରେ ବସି ଖୁବ୍ ଅସ୍ୱସ୍ତିବୋଧ କରୁଛନ୍ତି । ନା ? କିନ୍ତୁ ଆପଣଙ୍କ ସହିତ ଆସିବା ଭିନ୍ନ ମୋର ଅନ୍ୟ କୌଣସି ଉପାୟ ନଥିଲା । ଭାଇଙ୍କର ବ୍ୟାଙ୍କ ଚାକିରି । ଛୁଟି ଅତି କମ୍ । ସେ ଅତି ଅଳ୍ପ ଛୁଟିକୁ କୃପଣ ଭଳି ସଞ୍ଚୟ କରି ରଖନ୍ତି ଓଡ଼ିଶା ଯିବା ପାଇଁ । ମୋ ପାଇଁ ସେ ସଞ୍ଚିତ ଛୁଟିରୁ ଦୁଇ ତିନି ଦିନ ଖର୍ଚ୍ଚ କରିବା ପାଇଁ ନାରାଜ । ମିଷ୍ଟର ଚୌଧୁରୀ ଜଣେ ଖୁବ୍ କର୍ତ୍ତବ୍ୟପରାୟଣ ଡାକ୍ତର । ଦୁଇଦିନ ପାଞ୍ଜିମ ଛାଡ଼ି ଆସିଲେ ମିଲିଟାରି ଡାକ୍ତରଖାନାରେ ସବୁ ରୋଗୀ ମୃତ୍ୟୁମୁଖରେ ପଡ଼ିବେ ବୋଲି ତାଙ୍କର ଭୟ । ଆଉ ମୋର ଦୁର୍ଭାଗ୍ୟ, ପ୍ଲେନ୍ ଟିକେଟ ମଧ ମିଳିଲା ନାଇଁ...

ଡାକ୍ତର ଚୌଧୁରୀଙ୍କ ଉପରେ ଲିପିର କ୍ରୋଧର କାରଣ ମୁଁ ବୁଝିପାରିଲି, ନିଜ ପତ୍ନୀ ଅପେକ୍ଷା ନିଜ ଜୀବିକା ପ୍ରତି ଯେଉଁମାନେ ଅଧିକ ଅନୁରକ୍ତି ଦେଖାନ୍ତି, ଲିପି ଭଳି ଅନେକ ନାରୀ ସେଭଳି ସ୍ୱାମୀଙ୍କୁ ସହ୍ୟ କରିପାରନ୍ତି ନାହିଁ ।

ଲିପିର ବାମହାତ ପାପୁଲିରେ ହାତ ରଖି ମୁଁ କହିଲି— ଲିପି ! ଡାକ୍ତର ଚୌଧୁରୀଙ୍କ ଉପରେ ଥିବା ରାଗ, ଅଭିମାନ ମୋ ଉପରେ ଶୁଝାଅ ନାହିଁ । ତମ ଭଳି ସୁନ୍ଦରୀ ନାରୀର ସାନ୍ନିଧ ଯେତେ କମ୍ ସମୟ ପାଇଁ ହେଉନା କାହିଁକି; ଜୀବନକୁ ଏକ ପରମ ତୃପ୍ତିରେ ଭରିଦିଏ । ତମ ପାଖରେ ବସି ମୁଁ ଅସ୍ୱସ୍ତିବୋଧ କରୁନାହିଁ, ବରଂ ସଂକୋଚ ବୋଧକରୁଛି । ମନେହେଉଛି ମୁଁ ଯେମିତି ଜୋର୍ କରି ଡାକ୍ତର ଚୌଧୁରୀ କିମ୍ବା ପ୍ରଶାନ୍ତର ସ୍ଥାନ ଦଖଲ କରି ବସିଛି ! ସେମାନଙ୍କର ଏ ସିଟ୍‌ରେ ବସିବାର ଥିଲା । ଦୁର୍ଯୋଗକୁ ମୁଁ ବସିପଡ଼ିଛି ।

ଲିପିର ହାତ ପାପୁଲି ମୋ ହାତ ମୁଠା ଭିତରେ ଝାଳେଇଯାଉଥିଲା ।

ସେ ଖୁବ୍ ଚାପା କଣ୍ଠରେ କହିଲା— ସବୁ ଭାଗ୍ୟ ! ସବୁ ଭାଗ୍ୟ । ନାରୀ ତ ନିୟତି ହାତରେ ଏକ ଖେଳ କଣ୍ଢେଇ ! ସତ ନା !





ମନ ମୋର ଯାଯାବର । କ୍ୟାଲେଣ୍ଡରରେ ଲମ୍ବା ଛୁଟିର ଚିହ୍ନ ଦେଖିବା ମାତ୍ରେ ମନ ଘର ଛାଡ଼ି ପ୍ରବାସୀ ହୋଇଯାଏ । ସଂସାର ଛାଡ଼ି ସନ୍ୟାସୀ, ପରିବାର ଛାଡ଼ି ପରିବ୍ରାଜକ ! ହାତ ଠାରି ଡାକେ କେଉଁ ଦୂର ପାହାଡ଼, ନୀଳ ସମୁଦ୍ର, ଡାକ ଦେଇଯାଏ କେଉଁ ଗହନ ଅରଣ୍ୟ, ଦୂର ଜନପଦ । ଦୃଷ୍ଟି ତୃଷାର୍ତ୍ତ ହୋଇଯାଏ, ହୃଦୟ ଅସ୍ଥିର । ମନ ଭିତରେ ଥିବା ଏଇ ଅସ୍ଥିର, ଉଦାସୀ, ଭ୍ରମଣ-ବିଳାସୀ, ପ୍ରବାସୀ ଯାଯାବର ମତେ ବାଟ କଢ଼ାଇ ନିଏ । କେବେ ଡାକେ ଡାଲ୍ ହ୍ରଦର ଚିତ୍ରିତ ଶିକାରୀ; ଆଉ କେବେ ବନାରସର ମଣି-କର୍ଣ୍ଣିକା ଘାଟ; ଚିତା ଯେଉଁଠି ଅନିର୍ବାଣ !

ଆଉ କେବେ ହାତ ଠାରି ଡାକେ କାଞ୍ଚନଜଙ୍ଘାର ବର୍ଣ୍ଣିଳ ସୂର୍ଯ୍ୟୋଦୟ; ଆଉ କେବେ କନ୍ୟାକୁମାରୀର ବିବେକାନନ୍ଦ ମେମୋରିଆଲ୍ ରକ୍ ! ସୂର୍ଯ୍ୟ ଉଦୟ ହୁଏ ଦାର୍ଜିଲିଂ ଟାୱାର ପାଖରେ କାଞ୍ଚନଜଙ୍ଘାର ବରଫ ମୁକୁଟ ଦେହରେ ପ୍ରଥମ ଉଷ୍ଣ-ଆରକ୍ତ ଚୁମ୍ବନ ଦେଇ; ସେଇ ସୂର୍ଯ୍ୟ ପୁଣି ଅସ୍ତ ଯାଏ ଧାଡ଼ି ଧାଡ଼ି ନାରୀକେଳ ବୃକ୍ଷର ଶୀର୍ଷରେ; କବଲମ୍ ବିଚ୍‌ର ବିସ୍ତୃତ କୃଷ୍ଣ-ବାଲୁକା ବେଳାରେ ! ଯେଉଁ ମନ ପଣ୍ଡିଚେରୀ ଶ୍ରୀମାଆଙ୍କ ସମାଧି ପାଖରେ ସ୍ଥିର-ନିର୍ବିକଳ୍ପ; ସେଇ ମନ ପ୍ରଜାପତି ହୋଇଯାଏ, ଲକ୍ଷ୍ନୌର କେଉଁ ବର୍ଣ୍ଣାଢ଼୍ୟ ମୁଜ୍‌ରା ମଇଫିଲ୍‌ରେ... ! ନିଜ ଯାଯାବର ମନର ଅନ୍ୱେଷଣ କରି ଘୂରିବୁଲିଛି ସାରା ଭାରତବର୍ଷ । ଦେଖିଛି କେତେ ଅଭିଯାତ ସହର, ନୀର, ମନ୍ଦିର, ମସଜିଦ୍ ଗୀର୍ଜା, ସ୍ତୁପ ସମାଧି-ମନ୍ଦିର, ଆଧୁନିକ କଳକାରଖାନା, ଜ୍ଞାନ-ମନ୍ଦିର ବିଶ୍ୱବିଦ୍ୟାଳୟ । ସେଇ ଏକ ପ୍ରକାର ଚିଡ଼ିଆଖାନା, ପ୍ରତ୍ନଶାଳା, ୟାକୁରିୟାମ, ଆର୍ଟ ଗ୍ୟାଲେରୀ, ପାହାଡ଼, ଅରଣ୍ୟ, ବଟାନିକାଲ ଗାର୍ଡେନ, ନଦୀ ଓ ସମୁଦ୍ର ଦେଖି ଦେଖି ଆଖିର ଦୃଷ୍ଟିଶକ୍ତି ବଢ଼ିଛି । ସେଇ ଅଚିହ୍ନା ମଣିଷଙ୍କ ଭିଡ଼ ଭିତରେ ଭାରତବର୍ଷକୁ ମୁଁ ନୂଆ କରି ଚିହ୍ନିଛି । ନା, ନା— ନୂଆ ସ୍ଥାନ, ନୂଆ ନୂଆ ମଣିଷଙ୍କ ସହିତ ଘନିଷ୍ଠ ହୋଇ ମୁଁ ଯେପରି ନିଜକୁ ନୂଆକରି ଆବିଷ୍କାର କରିଛି !

ଏଇ ଆତ୍ମ-ଆବିଷ୍କାରର ନିଶା ମତେ ଆକୃଷ୍ଟ କରିଥିଲା ଗୋଆ ଆଡ଼କୁ ।

ପ୍ରାଚ୍ୟ ଭୂଖଣ୍ଡର ସାମ୍ରାଜ୍ଞୀ ଗୋଆ !

ତା'ର ସୌନ୍ଦର୍ଯ୍ୟର ଲୋଭରେ ହିନ୍ଦୁ କଦମ୍ବବଂଶୀୟ ରାଜାଙ୍କଠାରୁ ଆରମ୍ଭ କରି ବାହମନି ସୁଲତାନ, ପୁଣି ଇଂରେଜ, ଡଚ୍ ଆଉ ପର୍ତ୍ତୁଗୀଜ୍ ବଣିକ ଝାମ୍ପଦେଇଛନ୍ତି ଗୋଆର ବୁକୁ

ଉପରେ । ଶାସନ କରିଛନ୍ତି ଗୋଆବାସୀ ସରଳ ଜନସାଧାରଣଙ୍କୁ, ଶୋଷଣ କରିଛନ୍ତି ତା'ର ପ୍ରାକୃତିକ ସମ୍ପଦକୁ । ଦୀର୍ଘ ଚାରିଶହ ଏକାବନ ବର୍ଷ ବୈଦେଶିକ ଶାସନ ପରେ ୧୯୬୧ ମସିହା ଡିସେମ୍ବର ୧୯ ତାରିଖରେ ମାତ୍ର ପର୍ତ୍ତୁଗୀଜ୍ ଶାସନାଧୀନ ଗୋଆ ସ୍ୱାଧୀନ-ଭାରତ ସହିତ ମିଳିତ ହୋଇଛି ।

ଗୋଆ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାପାଇଁ କଲେଜ ଛାତ୍ର ଥିବାବେଳେ ମୁଁ ଦିନେ ସତ୍ୟାଗ୍ରହୀ ତାଲିକାଭୁକ୍ତ ହୋଇଥିଲି । ନା, ସତ୍ୟାଗ୍ରହୀ ଭାବରେ ମତେ ଗୋଆ ମଧ୍ୟରେ ପ୍ରବେଶ କରିବାର ସୁବିଧା ମିଳି ନଥିଲା । ଗୋଆର ପର୍ତ୍ତୁଗୀଜ୍ ପୋଲିସ୍‌ର ଲାଠିମାଡ଼ ଖାଇ ମତେ ବେଲ୍‌ଗାଓଁ ଫେରି ଆସିବାକୁ ପଡ଼ିଥିଲା; କିନ୍ତୁ ଗୋଆକୁ ମୁଁ କୌଣସି ଦିନ ଭୁଲି ପାରି ନଥିଲି । ମୋ ମନର ଅନ୍ଧକାରାଚ୍ଛନ୍ନ ଗୃହାଙ୍ଗନରେ ଲାବଣ୍ୟମୟୀ ଗୋଆ ଗୋଟିଏ ଘିଅ-ଦୀପ ଭଳି ଜଳୁଥିଲା ।

ଗୋଆ ମୋର ଅନେକ ଦିନର ସ୍ୱପ୍ନ ।

ସେଇ ସ୍ୱପ୍ନ ବାସ୍ତବ ରୂପ ନେଇଥିବାର ଆନନ୍ଦରେ ମୁଁ ଏକ ପ୍ରକାର ବିହ୍ୱଳିତ ହୋଇ ପଡ଼ିଥିଲି । ପଶ୍ଚିମ ଘାଟ ପର୍ବତମାଳାର ପାର୍ଶ୍ୱ ଦେଇ ଆମର ଯାତ୍ରୀବାହୀ ବସ୍ ଦ୍ରୁତଗତିରେ ଛୁଟିଥିବାବେଳେ ଆମ୍ବ, ନଡ଼ିଆ ଛାୟା-ଘେରା ଗୋଆର ଶୀତଳ ସ୍ନିଗ୍ଧ ରୂପ ମୋ ମନକୁ ଆଚ୍ଛନ୍ନ କରି ରଖିଥିଲା ।

ଲିପି ମୋର ସେଇ ସ୍ୱପ୍ନକୁ ଭାଙ୍ଗିଦେଇ କହିଲା– ଆପଣଙ୍କ ଆଖି ମାଡ଼ି ହୋଇ ଆସୁଛି । ଆପଣ ନିଃସଙ୍କୋଚରେ ମୋ କାନ୍ଧ ଉପରେ ମୁଣ୍ଡ ରଖି ଶୋଇପାରନ୍ତି । ଡାକ୍ତର ଚୌଧୁରୀଙ୍କୁ ଭୟ କରିବାର କିଛି କାରଣ ନାହିଁ । ଭ୍ରମରେ ସୁଦ୍ଧା ସେ ଏକଥା ଜାଣି ପାରିବେ ନାହିଁ ।

ସାରା ବସ୍‌ରେ ଆମେ ଦୁଇଜଣ ମାତ୍ର ଓଡ଼ିଆ । ଲିପିର ଓଡ଼ିଆ କଥା ଅନ୍ୟ କେହି ବୁଝିବାର ସମ୍ଭାବନା ନଥିଲା । ତଥାପି ମୋର ଭୟ ହେଲା, ବସ୍‌ର ସବୁ ଯାତ୍ରୀ ଯେପରି ତା'ର କଥାର ମର୍ମ ବୁଝିପାରି ମୁହଁ ଚାପି ହସୁଛନ୍ତି !

ଲିପି ମୁହଁରେ ଏକ ରହସ୍ୟମୟ ହସ ମଧ୍ୟ ରାତ୍ରିରେ କ୍ଳାନ୍ତ ଚନ୍ଦ୍ରର ଜ୍ୟୋତ୍ସ୍ନା ଭଳି ଚିକ୍ ଚିକ୍ କରୁଥିଲା ।

ମୁଁ ତାକୁ ଉତ୍ତର ଦେଇଥିଲି– ଡାକ୍ତର ଚୌଧୁରୀ ନଜାଣନ୍ତୁ; ତମେ ତ ଜାଣିବ, ମୁଁ ତମଠାରୁ ଅନ୍ୟାୟ ଭାବରେ କିଛି ଆନନ୍ଦ ଆଦାୟ କରିନେଉଛି ।

ଲିପି ସାଙ୍ଗେ ସାଙ୍ଗେ ପ୍ରତିବାଦ କଲା– ମିଛ କଥା । ମୁଁ ଏପରି ଆଦୌ ମନେ କରିବି ନାହିଁ । କ୍ଷୁଧାର୍ତ୍ତକୁ ଅନ୍ନ, ନିଦ୍ରିତକୁ କାନ୍ଧର କୋମଳ ଶଯ୍ୟା ଦାନ କଲେ ଗୃହିଣୀ ନାରୀର ପୁଣ୍ୟ ହୁଏ । ତା'ର ସ୍ୱାମୀ ଓ ପୁତ୍ରଙ୍କର ଏଥିରେ ଆୟୁ ବୃଦ୍ଧି ହୁଏ । ତା'ଛଡ଼ା ଦିନେ କୁମାରୀ ବୟସରେ ଆପଣଙ୍କ କାନ୍ଧରେ ନିଜ ମୁଣ୍ଡ ରଖି ନିଦ୍ରା ଯିବାର ସ୍ୱପ୍ନ ମୁଁ ଦେଖିଥିଲି । ସେ ସ୍ୱପ୍ନ ଯଦି ଅଲଗା ଭାବରେ ଆଜି ସଫଳ ହେବାକୁ ଯାଉଥାଏ; ସେଥିରେ ମୋର ଅନେକ ଆନନ୍ଦ ।

## ୧୬

ଯାତ୍ରୀବାହୀ ବସ୍ ମଧ୍ୟରେ ରାତ୍ରି ଗଭୀର ହୋଇ ଆସିଲାଣି । ବମ୍ବେ ନଗରୀ ରହିଗଲାଣି ଅନେକ ପଛରେ । ବସ୍ ମଧ୍ୟରେ ବସିଥିବା ଅନେକ ଯାତ୍ରୀ ସତକୁ ସତ ଘୁମାଇବାକୁ ଆରମ୍ଭ କଲେଣି । ଗହନ ରାତ୍ରିର ବୋଧହୁଏ ଏକ ନିଜସ୍ୱ ମାୟାବିନୀ ପ୍ରଭାବ ରହିଛି; ଯାହା ଫଳରେ ଲିପି ଭଳି ନାରୀ ହଠାତ୍ ପ୍ରଗଲ୍‌ଭା ହୋଇଉଠନ୍ତି !

ମୁଁ ତାକୁ ପ୍ରକୃତିସ୍ଥ କରି ଠିକ୍ ସ୍ଥାନରେ ପହଞ୍ଚାଇ ଦେବାପାଇଁ କହିଲି, ଲିପି — ମୁଁ ପ୍ରଶାନ୍ତର ବନ୍ଧୁ । ସେଇ ସୂତ୍ରରେ ତମ ସହିତ ମୋର ପରିଚୟ । ହୋଇପାରେ ସେ ପରିଚୟ କିଛି ପରିମାଣରେ ସେ କଲେଜ ପଢ଼ା ବୟସରେ ଘନିଷ୍ଠ ହୋଇଯାଇଥିଲା । କେତେ ଘନିଷ୍ଠ ମୋର ଠିକ୍ ମନେ ନାହିଁ; କିନ୍ତୁ ତମେ ମୋର ପ୍ରଣୟିନୀ କିମ୍ବା ପତ୍ନୀ ହେବ; ଏଭଳି ପ୍ରଶ୍ନ ସେଦିନ କେବେ ମୋ ମନକୁ ଆନ୍ଦୋଳିତ କରି ନଥିଲା; ଆଜି ମଧ୍ୟ କରେ ନାହିଁ ।

ଲିପି କିନ୍ତୁ ଦବିଗଲା ଭଳି ଝିଅ ନୁହେଁ ।

ସେ ଜିଦ୍ କଲାଭଳି କହିଲା— ମୁଁ କେବଳ ଆପଣଙ୍କଠାରୁ ଗୋଟିଏ କଥା ଜାଣିବାକୁ ଚାହେଁ; ଭାଇ ମୋ ସହିତ ଆପଣଙ୍କ ବିବାହ ପ୍ରସ୍ତାବ ପକାଇଲାବେଳେ ଆପଣ ତାକୁ ପ୍ରତ୍ୟାଖ୍ୟାନ କରିଥିଲେ କି ନାହିଁ ?

ପ୍ରଶାନ୍ତ ତମ ସହିତ ମୋ ବିବାହ-ପ୍ରସଙ୍ଗ ଉଠାଇଥିବା କଥା ମୋର ଆଦୌ ମନେ ପଡୁନାହିଁ । ହୁଏତ ଏଭଳି ପ୍ରସ୍ତାବ ପକାଇଥିଲେ ମୋ ଭଳି ଭ୍ରମଣ-ପାଗଳ ମଣିଷ ତାକୁ ପ୍ରତ୍ୟାଖ୍ୟାନ କରିଥାଆନ୍ତା, ଏଇ କଥା ଭାବି ସେ କହିଦେଇଛି ଯେ ମୁଁ ତା'ର ପ୍ରସ୍ତାବକୁ ଗ୍ରହଣ କଲି ନାହିଁ । ଏଥିରେ ତା'ର ସମ୍ମାନ ବଞ୍ଚିଗଲା; ମୁଁ ମଧ୍ୟ ଅକାରଣ ଅପ୍ରତିଭ ଅବସ୍ଥାରେ ପଡ଼ିଲି ନାହିଁ ! —ମୁଁ ତାକୁ ଗୋଟାଏ ବିଶ୍ୱାସଯୋଗ୍ୟ ଉତ୍ତର ଦେବାକୁ ଚେଷ୍ଟା କଲି ।

ମୋ କଥା ଶୁଣି ହଠାତ୍ ଗମ୍ଭୀର ହୋଇଗଲା ଲିପି । ମୁହଁରୁ ହସ ତା'ର ଲିଭିଗଲା ।

ସେ କ୍ଷୁବ୍‌ଧ କଣ୍ଠରେ କହିଲା— ମୁଁ ଯେ ଆପଣଙ୍କୁ ଭଲପାଉଥିଲି ଭାଇ ଏକଥା ଜାଣିଥିଲା । ଆପଣଙ୍କ ବହିକୁ ମୁଁ ସେ ବାଳିକା—ବୟସରେ ଠାକୁର ଭଳି ପୂଜା କରୁଥିଲି । ଆଜିକାଲି ଆଉ ମୁଁ ଆପଣଙ୍କ ବହି ପଢ଼େ ନାହିଁ; କିନ୍ତୁ ସେଦିନଗୁଡ଼ିକରେ ଆପଣଙ୍କ ନୂଆ ବହି ହାତକୁ ଆସିଲେ ମୁଁ କ୍ଷୁଧା ତୃଷା ଭୁଲିଯାଉଥିଲି । ସଂସାରୀ ହୋଇଗଲା ପରେ ମୁଁ ସବୁଠାରୁ ଯେଉଁ ମୂଲ୍ୟବାନ ପଦାର୍ଥଟି ହରାଇ ବସିଛି, ସେଇଟି ହେଲା ସେଦିନର ଭାବପ୍ରବଣତା । ଆଜିକାଲି କୌଣସି କଥା ପାଇଁ ସେଦିନ ଭଳି ମୁଁ ଭୋକ ଶୋଷ ଭୁଲି ପାରେ ନାହିଁ । ଆଉ ଯେଉଁଦିନ ଭାଇ ଆସି କହିଲା, ମୋ ସହିତ ବିବାହ ପ୍ରସ୍ତାବ ଦେଲାବେଳେ ଆପଣ ହୋ ହୋ ହସି ଉଡ଼ାଇଦେଲେ, ସେଦିନ ମୋର ଖୁବ୍ ମନ ଦୁଃଖ ହୋଇଥିଲା । ସତ କହିବି ? ମୁଁ ସାରା ରାତି ବିଛଣା ଭିଜାଇ ମନ ଭରି କାନ୍ଦିଥିଲି ।

ଲିପିର କଥାକୁ ସେଇ ମୁହୂର୍ତ୍ତରେ ମୋର ସତ୍ୟ ବୋଲି ବିଶ୍ୱାସ କରିବାକୁ ଇଚ୍ଛା ହେଲା । ବୟସରେ ସାତ ସାନ ହେଉ ପଛେ, ଦିନେ ଯେ ମୋ ପାଇଁ ଗୋଟିଏ ଝିଅ ରାତିସାରା ଶ୍ରାବଣ-ବର୍ଷା ଭଳି ବିଛଣା ଭିଜାଇ କାନ୍ଦିଥିଲା, ଏହା କିଛି କମ୍ ଅହଂକାରର କଥା ନୁହେଁ ।

କିନ୍ତୁ ପ୍ରଶାନ୍ତ କି ଇଡିୟଟ !

ମିଛ କଥା କହି ଲିପିକୁ ସେ କନ୍ଦାଇଲା କାହିଁକି ? ବାଳିକା ବୟସର ଅଳସ ସ୍ୱପ୍ନ ବେଶୀଦିନ ସ୍ଥାୟୀ ହୁଏ ନାହିଁ । ମନରେ କେବଳ ଦାଗ ରଖିଯାଏ ; ଯେଉଁ ଦାଗ ଖାଲି ଆଖିକୁ ଦେଖାଯାଏ ନାହିଁ । ବୟସ ହୋଇଯାଇଥିଲେ ଲିପି ନିଜ ମନର ଦାଗକୁ ନିଜେ ମଧ୍ୟ ଦେଖିପାରି ନଥାନ୍ତା ।

ଲିପି ମୋର ନୀରବତା ଲକ୍ଷ୍ୟ କରି କହିଲା— ଭାଇ ଭାରି ସ୍ୱାର୍ଥପର ! ବିବାହ ପ୍ରସ୍ତାବଟା ମଧ୍ୟ ଥରେ ପକାଇଲା ନାହିଁ ? ଅଥଚ ନିଜେ ଲଭ୍ ମାରେଜ୍ କରି...

ପ୍ରଶାନ୍ତ ଯେ ପ୍ରେମ-ବିବାହ କରିଛି ତା ମଧ୍ୟ ମତେ ଆଗରୁ ଜଣା ନଥିଲା । ସେ ବ୍ୟାଙ୍କ୍ ପ୍ରୋବେସନ୍ ଅଫିସର୍ ହୋଇ ବମ୍ବେ ଚାଲିଆସିଲା ପରେ ତା ସହିତ ମୋର ସକଳ ଯୋଗସୂତ୍ର ଛିନ୍ନ ହୋଇଯାଇଥିଲା । ସେଇ ସମୟ ମଧ୍ୟରେ ସେ ବିବାହ କରିଛି; ଲିପିକାର ବିବାହ ପରେ ପ୍ରଥମ ସନ୍ତାନ ଆସିଛି ତା'ର କୋଳକୁ । ଏ ସବୁ ମୋର ଜାଣିବାର କଥା ନୁହେଁ । ଗୋଆ ଆସିବା ରାସ୍ତାରେ ବମ୍ବେ ଠାରେ ତା ସହିତ ହଠାତ୍ ଦେଖା । ଚୁମ୍ବକ ଭଳି ସେ ମତେ ଟାଣି ନେଲା ତା'ର ଫ୍ଲାଟକୁ । ଦୁଇଦିନ ଉତ୍ସବ ଭଳି କଟିଗଲା ସେମାନଙ୍କ ସହିତ ବମ୍ବେରେ । ତୃତୀୟ ଦିନ ଏୟାର ଲାଇନ୍ ଅଫିସ୍‌ରୁ ଫେରି ମୁହଁ ଶୁଖାଇ ପ୍ରଶାନ୍ତ କହିଲା ତୁ ତ ପାଂଜିମ୍ ଯାଉଛୁ । ଲିପିକୁ ସାଙ୍ଗରେ ନେଇ ଯାଆ । ତା'ର ପ୍ଲେନ୍ ଟିକେଟ କାଲି ପାଇଁ ମିଳିଲା ନାହିଁ । ମୋର ମଧ୍ୟ ଛୁଟି ନାହିଁ । ବସ୍‌ରେ ଗଲେ ଅନ୍ୟୂନ ତିନି ଦିନ ଲାଗିଯିବ ଯିବା–ଆସିବା–ରହିବା ।

ମୁଁ ଭାବିଥିଲି ଲିପି ପ୍ରତିବାଦ କରିବ ।

ଯେଉଁମାନେ ପ୍ଲେନ୍‌ରେ ଯିବା ଆସିବା କରନ୍ତି ; ପନ୍ଦର ଘଣ୍ଟା ରାତି ଅନିଦ୍ରା ହୋଇ ବସ୍‌ରେ ଯିବା କଥା ସେମାନେ ଚିନ୍ତା କରିବା କଷ୍ଟ । କିନ୍ତୁ ପ୍ରଶାନ୍ତର ପ୍ରସ୍ତାବ ଶୁଣି ଲିପିର ଓଠରେ ହସ ଫୁଟିଉଠିଲା, ଆଖିରେ କଥା... !

ପ୍ରଶାନ୍ତର ସ୍ତ୍ରୀ ମୀନା ବେଶ୍ ସୁଗୃହିଣୀ । ଖୁବ୍ ସୁନ୍ଦରୀ ନ ହେଲେ ମଧ୍ୟ ପରିଚ୍ଛନ୍ନ ରୁଚିର ଝିଅ । ତାକୁ ଯଦି ପ୍ରଶାନ୍ତ ପ୍ରେମ କରି ବିବାହ କରିଥାଏ; କିଛି ଭୁଲ୍ କରିଛି ବୋଲି କହିହେବ ନାହିଁ । କାରଣ ଆଜିକାଲି ବିବାହ ପାଇଁ ଅନେକ ସୁନ୍ଦରୀ ଶିକ୍ଷିତା ଝିଅ ମିଳନ୍ତି ; କିନ୍ତୁ ମାର୍ଜିତ-ରୁଚି ଆଉ ଘର ସଂସାର କଳାଭଳି ସୁଗୃହିଣୀ ସହଜରେ ଆଖିରେ ପଡ଼ନ୍ତି ନାହିଁ ।

ଏହି ସମୟରେ ସେଇ ହିପ୍‌ପିଣୀ... !

ଲର୍ଡ୍‌କୁ ଧରି ପହଞ୍ଚିଗଲା ଆମ ସିଟ୍ ପାଖରେ ।

ମତେ ଲକ୍ଷ୍ୟ କରି କହିଲା—ପୁଅକୁ ନିଅ । ତା'ର ବୋଧହୁଏ ଶୋଇବା ବେଳ ହୋଇଗଲାଣି । ତା'ର ଆଖିପତା ଯୋଡ଼ି ହୋଇ ଆସୁଛି ।

ଲିପି ଲର୍ଡ୍‌କୁ କୋଳକୁ ନେଲା ଆଉ ଠିକ୍ ସେଇ ସମୟରେ ବସ୍ ଅଟକିଲା ଗୋଟାଏ ପଥ ପାର୍ଶ୍ୱର ଛୋଟ ବଜାର ପାଖରେ ; ସାମୟିକ ବିରତି ପାଇଁ ।

ଲିପିକୁ ମୁଁ ପଚାରିଲି—ବାହାରକୁ ଯିବ ?

ରାତି ପ୍ରାୟ ଏଗାରଟା ହେବ ।

ବସ୍ କଣ୍ଡକ୍ଟର ସୂଚନା ଦେଲା, ଯେଉଁମାନେ ଚା' କିମ୍ବା ଜଳଖିଆ ଖାଇବାକୁ ଚାହାନ୍ତି; ସେମାନେ ଏଠାରେ ଖାଇ ନେଇପାରନ୍ତି । ଗାଡ଼ି ପନ୍ଦର ମିନିଟ ଅଟକିବ ।

ଲିପି ବାହାରକୁ ଯିବା ପାଇଁ ମନାକଲା । ଜଳଖିଆ, ଚା' ଖାଇବା ପାଇଁ ମଧ ତା'ର ଅନିଚ୍ଛା । ମୁଁ ଏକାକୀ ବସ୍‌ରୁ ଓହ୍ଲାଇଗଲି ।

ମୋର ଗୋଟାଏ କପ୍ ଉତ୍ତପ୍ତ ଚା'; ଆଉ ଗୋଟାଏ ପ୍ୟାକ୍ ସିଗାରେଟ ଲୋଡ଼ା ।

ସ୍ଥାନଟି ମହାରାଷ୍ଟ୍ରର ଅନ୍ତର୍ଗତ ; କିମ୍ବା ଗୋଆର ଏକ ଅଙ୍ଗବିଶେଷ ଜାଣିବା ପାଇଁ ଇଚ୍ଛା ଥିଲା । କିନ୍ତୁ ଆକାଶରେ ଭୀରୁ ଚନ୍ଦ୍ରର ଅଭିସାର ଆଉ ପବନରେ କେଉଁ ଏକ ବଣୁଆ ଫୁଲର ବାସ୍ନା ଆଘ୍ରାଣ କରି ମୁଁ ପ୍ରଥମେ ସ୍ଥାନଟିର ଭୌଗୋଳିକ ଅବସ୍ଥିତି କଥା ପାସୋରି ଦେଲି । ଅନେକ ଦିନ ଧରି ମଧ-ରାତ୍ରିରେ ଏଭଳି ଜ୍ୟୋତ୍ସ୍ନାର ଯାଦୁ ଆଉ ବଣଫୁଲର ବାସ୍ନା ଏକତ୍ର କୌଣସି ନିର୍ଜନ ପାହାଡ଼ି ପଥ ଧାରରେ ମୁଁ ଅନୁଭବ କରି ନଥିଲି । ସେଇ ମାୟାବିନୀ ରାତ୍ରିର ମାୟା ମତେ ସବୁକଥା ଭୁଲାଇଦେଲା ।

କେଉଁଠୁ ଭାସିଆସୁଚି ଏଇ ମଦିର ମଧୁର ଫୁଲର ବାସ୍ନା ? କେତେ ଦୂରରେ ସେ ବନବିଥି, କେଉଁ ଅରଣ୍ୟରେ ସେ ଫୁଲଗଛ ?

ଶୁଣିଛି, ଗଙ୍ଗାନଦୀ ଉତ୍ସରିତ ହୋଇଛି ଶିବଙ୍କ ଜଟାରୁ ।

କିନ୍ତୁ କିଏ ମତେ କହିବ; କେଉଁଠୁ ପବନରେ ଉଡ଼ିଆସୁଛି ଏ ରାତି ନିଦଭଙ୍ଗା ଫୁଲର ବାସ୍ନା ?

କେବଳ ଆମର ବସ୍ ନୁହେଁ; ଆହୁରି ସାତଆଠଟା ଗୋଆକୁ ଯାଉଥିବା ଏବଂ ବମ୍ବେ ଫେରୁଥିବା ଯାତ୍ରୀବାହୀ ବସ୍ ସେଠାରେ ଠିଆ ହୋଇ ବିଶ୍ରାମ ନେଉଥିଲେ । ସାତଆଠଟା ବସ୍‌ର ଲୋକଙ୍କ ଗହଳିରେ ସ୍ଥାନଟା କିଛି ସମୟ ପାଇଁ ମେଳା ବସିଥିବା ଭଳି ମନେ ହେଉଥିଲା ।

ଅଳ୍ପ କେତୋଟି ଚା' ଜଳଖିଆ ଦୋକାନରେ ଭୀଷଣ ଭିଡ଼ ।

ଚା' ପାନର ଲୋଭ ତ୍ୟାଗକରି ମୁଁ ଗୋଟାଏ ପ୍ୟାକ୍ ସିଗାରେଟ୍ କିଣି ସେଇ ଫୁଲବାସ୍ନାର ଉତ୍ସ ଖୋଜି ବାହାରି ପଡ଼ିଛି ।

ଅଳ୍ପ କିଛି ବାଟ ଗଲାପରେ ଦେଖିଲି ଗୋଟିଏ ଶିଳାଖଣ୍ଡ ଉପରେ ଊର୍ଦ୍ଧ୍ୱମୁଖୀ ହୋଇ ବସିଛି ସେଇ ହିପ୍‌ପିଣୀ । ତା'ର ବାମହାତ ଆଙ୍ଗୁଠି ଫାଙ୍କରେ ଜଳିଯାଉଛି ଗୋଟାଏ ସିଗାରେଟ । କିନ୍ତୁ ସିଗାରେଟର ବାସ୍ନା ବଦଳରେ ଚରସର ଗନ୍ଧ...ଉତ୍କଟ, ଉଗ୍ର !

ସିଗାରେଟ ମଧରେ ନିଶ୍ଚୟ ଚରସ୍ ଭର୍ତ୍ତିକରି ନିଶା ସେବନ କରୁଛି ଝିଅଟା ।

ତା'ର ଦୁଇ ଟିଲା ଟିଲା ଆଖି ଈଷତ୍ ଆରକ୍ତ ହୋଇଆସୁଛି । ସେ ଅପଲକ ଆଖିରେ ତୃଷିତା ଚକୋରୀ ଭଳି ଜ୍ୟୋତ୍ସ୍ନାୟିତ ଆକାଶ ଆଡ଼େ ଚାହିଁରହିଛି ।

ମତେ ଦେଖି ସେ ଆଖିକୋଣରେ ଅଳ୍ପ ଅଳ୍ପ ହସିବାର ଭଙ୍ଗୀ କଲା । କିନ୍ତୁ ଠିକ୍ ହସିପାରିଲା ନାଇଁ । ନିଶା ଧରିଆସୁଛି । ସିଗାରେଟ ଭିତରେ ଚରସ୍ ନା ମରଜୁଆନା ?

ପୁଷ୍ପ ସୁରଭିର ଉତ୍ସ ସଂଧାନରେ ବାହାରି ମୁଁ ହଠାତ୍ ଚରସ୍ ମରଜୁଆନାର ମାଦକ-ଗନ୍ଧ ପାଖରେ ଅଟକିଗଲି ।

ଅର୍ଦ୍ଧ ନିଶାଗ୍ରସ୍ତ ଅବସ୍ଥାରେ ଝିଅଟି କିନ୍ତୁ ବେଶ୍ ସ୍ୱାଭାବିକ ଆଉ ସୁନ୍ଦରୀ ଦେଖାଯାଉଥିଲା ।

ମୁଁ ତାକୁ ହଠାତ୍ ପ୍ରଶ୍ନ କଲି—ତମର ନାମ କଅଣ ?

ସେ ମୃଦୁ ଧକ୍କା ଖାଇଲା ଭଳି ଚମକିପଡ଼ି ଉତ୍ତର ଦେଲା— ନାମ ? ଯାଃ—ଲାସ୍ ଏଂଜେଲ୍‌ସ ଛାଡ଼ି ଆସିବା ପରେ ମୁଁ ମୋର ନାମ, ନାସ୍‌ନାଲିଟି, କଣ୍ଟ୍ରି —ସବୁର ନାମ ଭୁଲିଯାଇଛି । ନାମ ନଥାଇ ମୁଁ ଜନ୍ମ ହୋଇଥିଲି, ମୁଁ ଜାଣେ, ମଲାପରେ ମୋ ନାମ କେହି ମନେରଖନ୍ତେ ନାହିଁ । ତେଣୁ ନାମରେ କଅଣ ଅଛି ? ନଥିଂ....

ମୋର ମନେହେଲା ଏପର୍ଯ୍ୟନ୍ତ ମୁଁ କେବଳ ଧଳା କାଗଜ ରଙ୍ଗର ଗୋଟିଏ ଲମ୍ବା ଯୌବନ-ପୁଷ୍ଟ ନାରୀକୁ ଦେଖୁଥିଲି ; ତା'ର କଥା ଶୁଣିଲା ପରେ, ଏଇ ପ୍ରଥମ ଜଣେ ହିପ୍‌ପିଣୀ ଦେଖିଲି ।

ମୁଁ ତାକୁ ବୁଝାଇବାକୁ ଚେଷ୍ଟାକଲି —ନାମ ତ କେବଳ ଏକ ଚିହ୍ନ ମାତ୍ର ! ଅଗଣିତ ମଣିଷଙ୍କ ଭିଡ଼ ଭିତରୁ ଜଣଙ୍କୁ ଚିହ୍ନିବାକୁ ହେଲେ ତା'ର ଗୋଟାଏ ଅଲଗା ଚିହ୍ନ ଥିବା ଦରକାର । ନାମ ସେଇ ଚିହ୍ନ । ତା ନ ହେଲେ ତମକୁ ମୁଁ କଅଣ ବୋଲି ଡାକିବି ?

ସେଇ ଚରସ କିମ୍ବା ମରଜୁଆନା ଭର୍ତ୍ତି ସିଗାରେଟ୍‌ରେ ଗୋଟାଏ ଲମ୍ବା ଟାଣ ଦେଇ ହିପ୍‌ପିଣୀ ସାମାନ୍ୟ ମୁଖଭଙ୍ଗୀ ବିକୃତ କଲା । ତାପରେ ମତେ ଉତ୍ତର ଦେଲା—ଗୋଟିଏ ନାମରେ ତ ଅନେକ ଲୋକ ଥାଇପାରନ୍ତି ! ନାମଟା ତାହାହେଲେ ଚିହ୍ନ କେମିତି ? ସତ କଥା କହିବାକୁ ଗଲେ ସଂସାରରେ ସବୁ ଚିହ୍ନ ଯନ୍ତ୍ରଣାର ହେତୁ, ଏଇ ଚିହ୍ନ ମଣିଷକୁ ମଣିଷଠାରୁ ଅଲଗା କରିଦେଇଛି । କିଏ ଇଣ୍ଡିୟାନ୍, କିଏ ମାର୍କିନ୍, କିଏ ହିନ୍ଦୁ, କିଏ ଖ୍ରୀଷ୍ଟିୟାନ୍ । ଏଇ ଚିହ୍ନ ଭେଦଭାବ ବଢ଼ାଇଛି, ମଣିଷ ପାଖରେ ମଣିଷକୁ ଅଚିହ୍ନା କରିଦେଇଛି । ମିଷ୍ଟର୍ ଅଙ୍କଲ ! ମୁଁ ଚିହ୍ନରେ ବିଶ୍ୱାସ କରେ ନାହିଁ । ଆପଣ ଯଦି ଚାହାନ୍ତି, ମତେ ନିଜେ ଯେକୌଣସି ଏକ ନାମରେ ଡାକିପାରନ୍ତି ! ଯେମିତି ମୁଁ ଆପଣଙ୍କୁ ମିଷ୍ଟର୍ ଅଙ୍କଲ୍ ବୋଲି ଡାକିପାରିଲି ।

: ମିଷ୍ଟର ଅଙ୍କଲ୍! —ମୁଁ ବିସ୍ମୟରେ ପ୍ରଶ୍ନ କଲି ।

ସେ ନିଜର ତୀକ୍ଷ୍ଣ ନାସାଗ୍ରରେ ଏକ କୁଞ୍ଚନ ସୃଷ୍ଟି କରି କହିଲା—ଆପଣଙ୍କ ସେ ଝିଲାଟି କହିଥିଲା ଆପଣ ତା'ର ଡାଡ଼ି ନୁହନ୍ତି ଅଙ୍କଲ୍...ବାସ୍...

ବାକ୍ୟ ସଂପୂର୍ଣ୍ଣ ନକରି ହିପ୍‌ପିଣୀ ଏଥର ସ୍ୱାଭାବିକ ଭାବରେ ହସିଲା ।

ବସ୍‌ର ବାରମ୍ବାର ହର୍ଣ୍ଣ ଶୁଣି ଆମେ ଦୁହେଁ ସଚେତନ ହୋଇଉଠିଲୁ ।

ଫେରିବାକୁ ହେବ ।

ଆସିଲାବେଳେ ଗୋଟିଏ ମୁହୂର୍ତ୍ତ ପାଇଁ ସେ ମୋ କାନ୍ଧରେ ହାତଭାରା ଦେଇ ସେ ଶିଳାଖଣ୍ଡ ଉପରୁ ଉଠିଥିଲା । ତା'ର ଉତ୍ତପ୍ତ ଦୀର୍ଘଶ୍ୱାସ ମୋ ମୁହଁରେ ବାଜି ଶୀତଳ ହୋଇଯାଇଥିଲା । ସେଇ ବଣ୍ୟ ଫୁଲର ବାସ୍ନା ! ମନେହୋଇଥିଲା ସେଇ ଫୁଲ ବାସ୍ନାର ଉତ୍ସ ହେଉଛି ସେଇ୍ ହିପ୍‌ପିଣୀ, ଯାହାର ଆରଣ୍ୟକ-ଯୌବନ ସେଇ ଫୁଲର ବାସ୍ନାରେ ଉଚ୍ଛକିତ !





ପାହାନ୍ତା ପ୍ରହରକୁ ମତେ ନିଦ ଲାଗି ଆସିଥିଲା ।

ସକାଳ ହୋଇଯାଇଥିଲେ ବି ଲିପି ମୋର ନିଦ୍ରା-ଭଙ୍ଗ କରି ନଥିଲା; କିନ୍ତୁ ମାଣ୍ଡବୀ ନଦୀର ପୋଲ ଉପର ଦେଇ ଆମର ବସ୍ ଯେତେବେଳେ ବସ୍ ଷ୍ଟାଣ୍ଡ୍ ଆଡ଼କୁ ଛୁଟିଯାଉଥିଲା; ଲର୍ଡ ସେତେବେଳେ ଚିତ୍କାର କରିଉଠିଲା, ଅଙ୍କଲ୍ ! ପାଞ୍ଜିମ୍...ପାଞ୍ଜିମ୍... !

ଦିନେ ଯେଉଁ ଅଞ୍ଚଳ ଥିଲା ଗୋଧନ ସମୃଦ୍ଧ ଗୋମନ୍ତକ; ଆଜି ତାହାରି ନାମ ଗୋଆ । ସେଇ ଗୋଆର ରାଜଧାନୀ ପାଂଞ୍ଜିମ୍ । ସହରର ବନ୍ଧ ଉପରେ ତିନୋଟି ସମାନ୍ତର ସରଳରେଖା ଭଳି ପୂର୍ବରୁ ପଶ୍ଚିମକୁ ଲମ୍ବିଯାଇଛି ଆରବ ସାଗରର ଜଳରେଖା ସହିତ । ମାଣ୍ଡବୀ ନଦୀର ତୀର ଭୂମିରେ ଉଦ୍ଧତ ମସ୍ତକ ଉତ୍ତୋଳନ କରି ଠିଆହୋଇଛି ଗୋଆର ସେକ୍ରେଟେରିଏଟ୍...ଏକଦା ଯାହା ଥିଲା ଆଦିଲ ଶାହାଙ୍କ ରାଜଭବନ ।

ପାହାଡ଼ ପର୍ବତ, ନଦନଦୀ ଆଉ ସମୁଦ୍ର-ବେଳାକୁ ନେଇ ଗଢ଼ିଉଠିଛି ଏକଦା ଧୀବର ଅଧୁଷିତ ଅଞ୍ଚଳ ଆଧୁନିକ ଗୋଆ । ଏହାର ୧୦୦ କିଲୋମିଟର ଦୀର୍ଘ ବେଳାଭୂମି ତୀରେ ତୀରେ ଆମ୍ବ, ନଡ଼ିଆ, ତାଳ, ଡାଲଚିନି, କାଜୁବାଦାମ ଆଉ ଅନାରସ୍‌ର ଧାଡ଼ି ଧାଡ଼ି ଗଛ । ପ୍ରାଚୀନ ଗୀର୍ଜା, ମନ୍ଦିର-ମାଳିନୀ ଏଇ ଛୋଟ ରାଜ୍ୟ ପ୍ରକୃତିର ଅକୃତ୍ରିମ ସ୍ନେହରେ ଲାବଣ୍ୟମୟୀ । ପ୍ରାକୃତିକ ସମ୍ପଦ ଆଉ ବାଣିଜ୍ୟିକ ସୁଯୋଗର ପ୍ରଲୋଭନରେ ଏହାକୁ କରାୟତ୍ତ କରିବା ପାଇଁ ଡଚ୍, ଇଂରେଜ ଆଉ ପର୍ତ୍ତୁଗୀଜ୍‌ମାନଙ୍କ ମଧ୍ୟରେ ଶହ ଶହ ବର୍ଷଧରି ଲାଗି ରହିଥିଲା ରକ୍ତାକ୍ତ ସଂଘର୍ଷ । ଷୋଡ଼ଶ ଶତାବ୍ଦୀରେ ଆଫେନ୍‌ସୋ ଡେ ଆଲ୍‌ବୁକାର୍କ ମାତ୍ର କୋଡ଼ିଏଟି ଜାହାଜ ଆଉ ବାରଶହ ସୈନ୍ୟଙ୍କ ସହାୟତାରେ ଗୋଆ ଅଧିକାର କରି ପର୍ତ୍ତୁଗୀଜ ଶାସନ ପ୍ରତିଷ୍ଠା କରିଥିଲେ । ପରେ ଏହା ପୂର୍ବ-ପଶ୍ଚିମର ପ୍ରଧାନ ବାଣିଜ୍ୟ କେନ୍ଦ୍ର ହୋଇଉଠିଥିଲା । ପଶ୍ଚିମଘାଟ ପର୍ବତମାଳାରେ ହେଉଥିବା ମସଲା ପ୍ରଚୁର ପରିମାଣରେ ଯାଉଥିଲା ବିଦେଶକୁ ଏବଂ ପଶ୍ଚିମୀ ଦେଶମାନଙ୍କରେ ତିଆରି ହେଉଥିବା ଶିଳ୍ପଜାତ ପଦାର୍ଥ ଗୋଆ ବାଟ ଦେଇ ପ୍ରବେଶ କରୁଥିଲା ପଶ୍ଚିମ ଭାରତର ବିଭିନ୍ନ ସହର, ବଜାରରେ ।

ପର୍ତ୍ତୁଗୀଜ୍ ଶାସନ କବଳରୁ ଗୋଆକୁ ମୁକ୍ତ କରିବା ପାଇଁ ସ୍ୱାଧୀନତା ପ୍ରାପ୍ତି ପରେ ଭାରତର ଜନଗଣ ଉତ୍‌କ୍ଷିପ୍ତ ହୋଇଉଠିଥିଲେ । ପର୍ତ୍ତୁଗୀଜ ଶାସନକର୍ତ୍ତା ସାଲଜାରଙ୍କ

ଏକଚ୍ଛତ୍ରବାଦୀ ଶାସନ ବିରୁଦ୍ଧରେ ଅହିଂସ ସତ୍ୟାଗ୍ରହ ଚଳାଇବାପାଇଁ ସାରା ଭାରତବର୍ଷରେ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଏକଦା ସେଇ ଆଲୋଡ଼ନର ଢେଉ ଲାଗିଥିଲା ମୋର ମନରେ । ସେଦିନ ମୁଁ ଥିଲି କଲେଜ ଛାତ୍ର । ସତ୍ୟାଗ୍ରହୀ ତାଲିକାରେ ନାମ ଲେଖାଇ ମୁଁ ଆସିଥିଲି ଗୋଆରେ ପ୍ରବେଶ କରିବା ପାଇଁ । ସେଦିନ ନାନା ସାହେବ ଗଣେଶ ଗୋରେ, ତ୍ରିଦିବ ଚୌଧୁରୀ ପ୍ରମୁଖ ବିଶିଷ୍ଟ ଜନନେତା ସାଲ୍‌ଜାର୍‌ଙ୍କ ଜେଲ୍‌ରେ ସଢୁଥିଲେ; ଗୋଆର ମୁକ୍ତି ସ୍ୱପ୍ନ ଦେଖି ।

ଗୋଆର ମାନଚିତ୍ର ସେଦିନ ମତେ ଭଲ କରି ଜଣା ନଥିଲା । କିନ୍ତୁ ଭାରତବର୍ଷରୁ ପର୍ତ୍ତୁଗୀଜ ଔପନିବେଶିକବାଦର ଶେଷ ଚିହ୍ନକୁ ପୋଛି ଲିଭାଇ ଦେବାପାଇଁ ମନ ଭିତରେ ସୃଷ୍ଟି ହୋଇଥିଲା ଏକ ଉଷ୍ମ ଆବେଗ, ଆଗ୍ନେୟ-ଆକାଂକ୍ଷା ।

ଏକାବନ ଜଣ ସତ୍ୟାଗ୍ରହୀଙ୍କ ଗ୍ରହଣରେ ପର୍ତ୍ତୁଗୀଜ ପୋଲିସ ବାହିନୀର ବ୍ୟୂହ ଭେଦ କରି ଗୋଆ ଅଭ୍ୟନ୍ତରରେ ପ୍ରବେଶ କରିବା ପାଇଁ ଚେଷ୍ଟା କଲାବେଳେ ପର୍ତ୍ତୁଗୀଜ ପୋଲିସର ଲାଠି ବାଜିଥିଲା ମୋ ବାମ କାନ୍ଧରେ ।

ଗୋଆର ଜେଲ ସବୁ ସେଦିନ ପୂର୍ଣ୍ଣ ହୋଇଯାଇଥିଲା ଭାରତୀୟ ସତ୍ୟାଗ୍ରହୀମାନଙ୍କ ଦ୍ୱାରା । ତେଣୁ ମାଡ଼ ଦେଇ ପର୍ତ୍ତୁଗୀଜ୍ ସରକାର ସତ୍ୟାଗ୍ରହୀମାନଙ୍କୁ ଭାରତୀୟ ଅଞ୍ଚଳକୁ ଫେରାଇ ଦେଉଥିଲେ ।

ଅହିଂସ, ନିରସ୍ତ୍ର ସତ୍ୟାଗ୍ରହୀମାନଙ୍କୁ ଲାଠିର ଆଘାତ, ବନ୍ଧୁକର ଗୁଳିରେ ଆହତ କରି ପର୍ତ୍ତୁଗୀଜ୍ ସରକାର ଗୋଆରେ ନିଜର ଔପନିବେଶକ-ଶାସନ କିଛିଦିନ ଚାଲୁ ରଖିଥିଲେ ସତ୍ୟ; କିନ୍ତୁ ଜନମତର ଚାପରେ ଯେଉଁଦିନ ଭାରତୀୟ ସୈନ୍ୟବାହିନୀ ଗୋଆର ସୀମାନ୍ତ ଅତିକ୍ରମ କଲେ, ସେଦିନ ଗୋଆ ତ୍ୟାଗ କରି ଆକାଶ ପଥରେ; ଆରବସାଗରର ଜଳ ପଥରେ ପ୍ରାଣ ବଞ୍ଚାଇ ପଳାୟନ କରିବାକୁ ସେମାନଙ୍କର ତର ସହିତ ନଥିଲା ।

୧୯୬୧ ମସିହା ଡିସେମ୍ବର ୧୯ ତାରିଖଦିନ ପର୍ତ୍ତୁଗୀଜ ଶାସନ ମୁକ୍ତ ହୋଇ ଗୋଆ ଭାରତବର୍ଷ ସହିତ ଯୁକ୍ତ ହୋଇଥିଲା ।

ଶେଷ ହୋଇଥିଲା ଗୋଆରୁ ଦୀର୍ଘାୟିତ ବୈଦେଶିକ ଶାସନର କାଳରାତ୍ରି ।

ଗୋଆରେ ପ୍ରବେଶ କରିବାକୁ ଆସି ଦିନେ ଲାଠିମାଡ଼ ଖାଇ ମୁଁ ଫେରିଯାଇଥିଲି । ତେଣୁ ଲର୍ଡର କଣ୍ଠସ୍ୱର ଶୁଣି ମୋ ଆଖିରୁ ଯେତେବେଳେ ତନ୍ଦ୍ରାର ପ୍ରଲେପ ଲିଭିଗଲା; ଗୋଆରେ ପ୍ରବେଶ କରିଥିବାର ଆନନ୍ଦରେ ଲାଠିରେ ଆଘାତ ପାଇଥିବା ମୋର ସେଇ ବାମ କାନ୍ଧ ହଠାତ୍ ରକ୍‌କିନି ହୋଇଗଲା ।

ସକାଳର ପରିଚ୍ଛନ୍ନ ଆଲୋକରେ ଝଲମଲ୍ କରୁଥିଲା ପାଂଜିମ୍ ।

ଲିପି ବସ୍‌ର କାଚପରଦା ଆଡ଼େଇ ବାହାରକୁ ଚାହିଁଥିଲା । ମୁଁ ନିଦଭାଙ୍ଗି ଉଠିବା ପରେ ମତେ କହିଲା, ବସ୍‌ରେ ଆପଣ ବେଶ୍ ଶୋଇପାରନ୍ତି । ମୋ ଆଖି କିନ୍ତୁ କଷା ପଡ଼ିନି ।

ମୁଁ ଧୀରସ୍ୱରରେ କହିଲି—ଝିଅମାନଙ୍କ ସୁନିଦ୍ରା ପାଇଁ ଚାରିକାନ୍ଥର ଆବରଣ ଲୋଡ଼ା ହୁଏ । ମୁଁ କିନ୍ତୁ ପୁରୁଷ... ଯାଯାବର । ଟ୍ରେନ୍‌ର ଅଣଓସାରିଆ ଲୁହାବେଞ୍ଚ୍... ଯାତ୍ରୀବାହୀ ବସ୍‌ର ସିଟ୍ ଗାଢ଼ ନିଦ ପାଇଁ ମୋର ଯଥେଷ୍ଟ...

ଲିପି ମୁହଁରେ ଏକ ଶ୍ଳେଷାତ୍ମକ ହସର ଆଲୁଅ ଝଲସିଉଠିଲା ।

ସେ ଚାପାକଣ୍ଠରେ କହିଲା—ଝିଅମାନଙ୍କ ସୁନିଦ୍ରା ପାଇଁ କେବଳ ଚାରିକାନ୍ଥର ବନ୍ଦ କୋଠରି ନୁହେଁ, ଜଣେ ସମର୍ଥ ପୁରୁଷର ଲୋମଶ ବକ୍ଷ ମଧ୍ୟ ମୁହଁ ଜାକିବା ପାଇଁ ଦରକାର ହୁଏ...ଯେତେ ବଡ଼ ଲେଖକ ହେଲେ ମଧ୍ୟ ସେକଥା ଆପଣ କୌଣସିଦିନ ଜାଣିବେ ନାହିଁ ।

ଇଙ୍ଗିତଟା ଖୁବ୍ ଅଶ୍ଳୀଳ ଅଶ୍ଳୀଳ ମନେହେଉଥିଲେ ବି ମୁଁ ଦେହକୁ ନେଲିନାହିଁ । ବିବାହ ପରେ ଲିପି ବେଶ୍ ସ୍ଥୂଳ ରସିକତା କରି ଶିଖିଛି । ଲଜ୍ଜା, ସଂକୋଚର ରେଶମୀ ଓଢ଼ଣା ମୁହଁରୁ ତା'ର ଖସିପଡ଼ିଛି; କିନ୍ତୁ ସେ କିଶୋରୀ ଦିନଗୁଡ଼ିକରେ ସେ ଏଭଳି ନଥିଲା । ବିବାହ ପରେ ସେ ଖୁବ୍ ବଦଳିଯାଇଛି ।

ମୁଁ କଅଣ ଆଉ କହିବାକୁ ଯାଉଥିଲି, ଲର୍ଡ ଏହି ସମୟରେ ଆନନ୍ଦରେ ଚିତ୍କାର କରିଉଠିଲା, ଡାଡି ! ଡାଡି !

ଲିପି ତରତର କରି ନିଜର ଅସଂଯତ ବେଶବାସ ଠିକ୍ କରିନେଇ କହିଲା—ଡାକ୍ତର ଚୌଧୁରୀ !

ଲକ୍ଷ୍ୟ କଲି ଆମ ବସ୍ ଆଲବୁକର୍କ ରୋଡ୍‌ସ୍ଥ ଟୁରିଷ୍ଟ ବ୍ୟୁରୋ ଅଫିସ୍ ସାମ୍ନାରେ ଠିଆହୋଇଛି ଆଉ ଆମ ସିଟ୍ ପାଖ ଝରକା କଡ଼ରେ ଠିଆହୋଇଛନ୍ତି ଜଣେ ଇଣ୍ଡିୟାନ୍ ହିପ୍‌ପି... ଯାହାକୁ ଲର୍ଡ ଡାଡି ବୋଲି କହି ଚିତ୍କାର କରୁଛି ।

ଏଇ ତା ହେଲେ ଡାକ୍ତର ଚୌଧୁରୀ !

ଆମେ ସମସ୍ତେ ଜିନିଷପତ୍ର ଧରି ବସ୍‌ରୁ ଓହ୍ଲାଇଗଲୁ । ଟୁରିଷ୍ଟ ରେଷ୍ଟ ହାଉସ୍‌ରେ ମୋର ରହିବା ପାଇଁ ଆଗରୁ ଗୋଟିଏ ସିଙ୍ଗଲ୍ ରୁମ୍ ସଂରକ୍ଷିତ ହୋଇ ରହିଛି । ପ୍ରଶାନ୍ତ ବୋଧହୁଏ ଟେଲିଫୋନ୍ କରିଥିଲା ଡାକ୍ତର ଚୌଧୁରୀଙ୍କୁ ଆମେ ବସ୍‌ରେ ଆଜି ଆସୁଛୁ ବୋଲି । ସମ୍ଭବତଃ ସେ ମଧ୍ୟ ତାଙ୍କୁ ଜଣାଇଦେଇଥିଲା ମୁଁ ଟୁରିଷ୍ଟ ବ୍ୟୁରୋରେଷ୍ଟ ହାଉସ୍‌ରେ ଉଠିବି । ସେଥିପାଇଁ ମିଲିଟାରୀ ଜିପ୍ ନେଇ ଏଡ଼େ ସକାଳୁ ସକାଳୁ ଡାକ୍ତର ଚୌଧୁରୀ ନିଜ ସ୍ତ୍ରୀ-ପୁତ୍ରଙ୍କୁ ନେବାପାଇଁ ଏଠାକୁ ଚାଲିଆସିଛନ୍ତି ।

ଲିପି ନିଜ ସ୍ୱାମୀଙ୍କ ସହ ମୋର ପରିଚୟ କରାଇଦେଲା ।

କୃତଜ୍ଞତାରେ ନିଜ ଦୁଇ କାନ୍ଧକୁ ସାମାନ୍ୟ ଆନ୍ଦୋଳିତ କରି ଡାକ୍ତର ଚୌଧୁରୀ କହିଲେ, ବହୁତ ଧନ୍ୟବାଦ । ଲିପି କେବେ ଏକୁଟିଆ ବସ୍‌ରେ ପାଂଜିମ୍ ଆସିନି । ତା'ର ଭାଇଙ୍କଠାରୁ ଟେଲିଫୋନ୍ ପାଇ ମୁଁ ଖୁବ୍ ଚିନ୍ତିତ ହୋଇପଡ଼ିଥିଲି । ଆପଣ ଯେ ସାଙ୍ଗରେ ଆସିଛନ୍ତି, ସେ କଥା ଫୋନ୍‌ରେ ସେ କହି ନଥିଲେ । ଯାହାହେଉ, ଆପଣମାନେ ଯେ ଭଲରେ ଭଲରେ ଠିକ୍

ସମୟରେ ଆସି ପହଞ୍ଚିଛନ୍ତି, ସେଇଟା ସୌଭାଗ୍ୟ । ଆଜିକାଲି ଏଇ ରୁଟ୍‌ରେ ଖୁବ୍ ଆକ୍‌ସିଡେଣ୍ଟ୍ ହେଉଛି...ଆଉ ଲର୍ଡ ଯେମିତି ଦୁଷ୍ଟ...

ଲିପି ସେତେବେଳକୁ ମୁଣ୍ଡ ଉପରେ ଓଢ଼ଣା ଟାଣିଦେଇ ଜଣେ ଓଡ଼ିଆ ଗୃହବଧୂ ଭଳି ନିଜକୁ ସଜାଇ ନେଇଥିଲା । ବସ୍‌ରେ ଆସିଲାବେଳେ ତା'ର ଯେଉଁ ସ୍ୱାମୀ-ବିରୋଧୀ ପ୍ରଗଲ୍‌ଭତା ପ୍ରତି ମୁହୂର୍ତ୍ତରେ ପ୍ରକଟିତ ହେଉଥିଲା; ତାର ଚିହ୍ନ ନଥିଲା ତା'ର ଭାବଭଙ୍ଗୀରେ ।

ନାରୀ ଯେ ଜଣେ କୁଶଳୀ ଅଭିନେତ୍ରୀ, ସାଂସାରିକ ଜୀବନରେ ସୁଖୀ ହେବା ପାଇଁ ତାକୁ ବିଭିନ୍ନ ଭୂମିକାରେ ଅଭିନୟ କରିବାକୁ ହୁଏ; ଲିପିର ସେ ବେଶ ଆଉ ଭଙ୍ଗୀ-ବଦଳ ଦେଖି ମୁଁ ବେଶ୍ ବୁଝିପାରିଥିଲି ।

ମୁଁ ମୋର ଜିନିଷପତ୍ର କୁଲି ହାତରେ ଟୁରିଷ୍ଟ ବ୍ୟୁରୋକୁ ପଠାଇବାକୁ ଉଦ୍ୟମ କରୁଛି ଦେଖି ଡାକ୍ତର ଚୌଧୁରୀ ବାଧାଦେଲେ ।

: ଏ କଅଣ ହେଉଛି ? ଆପଣ ଆମ ବସାରେ ନରହି ଏ ଟୁରିଷ୍ଟ ଲଜ୍‌ରେ ରହିବେ କାହିଁକି ? ଏ ଭାରି ଅନ୍ୟାୟ ।

: କିନ୍ତୁ ମୁଁ ଯେ ସାତ ଦିନ ଲାଗି ଏ ଟୁରିଷ୍ଟ ଲଜ୍‌ରେ ଗୋଟାଏ ସିଙ୍ଗଲ୍ ରୁମ୍ ଅଗ୍ରୀମ ଟଙ୍କା ପଠାଇ ବୁକ୍ କରି ରଖିଛି !

ଡାକ୍ତର ଚୌଧୁରୀଙ୍କୁ ମୁଁ ବୁଝାଇବାକୁ ଚେଷ୍ଟା କଲି ।

ମତେ ସମର୍ଥନ କରି ଲିପି ମଧ୍ୟ କହିଲା—ସେ ଜଣେ ଟୁରିଷ୍ଟ । ଯାଯାବର । ଚାରିକାନ୍ଥର ଆବଦ୍ଧ କୋଠରିରେ ତାଙ୍କର ଶ୍ୱାସରୋଧ ହୁଏ । ସେ କଅଣ ଆମ କ୍ୱାର୍ଟରକୁ ଯିବେ ?

ଡାକ୍ତର ଚୌଧୁରୀ କହିଲେ—ଆପଣ ରାତିସାରା ବସ୍‌ରେ ବସି ବସି ଆସିଛନ୍ତି । ଆଜି ଦିନସାରା ଆପଣ ବିଶ୍ରାମ ନେବା ଦରକାର । ଟୁରିଷ୍ଟ ବ୍ୟୁରୋ ରେଷ୍ଟ ହାଉସ୍‌ରେ ଅନେକ ଅସୁବିଧା । ଆପଣ ଅନ୍ତତଃ ଆଜି ଦିନଟା ଆମ ବସାରେ ବିଶ୍ରାମ ନିଅନ୍ତୁ । କାଲିଠାରୁ ଟୁରିଷ୍ଟ ହେବେ...

ପ୍ରସ୍ତାବଟା ଗ୍ରହଣୀୟ ମନେହେଲା ।

: କିନ୍ତୁ ରୁମ୍‌ଟା ଆଜିଠାରୁ ରିଜର୍ଭ ହୋଇଛି... । —ଇତସ୍ତତଃ ହୋଇ ତଥାପି ନିଜର ଦ୍ୱିଧାଭାବ ପ୍ରକାଶ କଲି ।

ଆଉ ଠିକ୍ ସେଇ ସମୟରେ ସେ ହିପ୍‌ପିଣୀ... !

: ଅନ୍ତତଃ ଆଜି ଦିନଟା ପାଇଁ ରୁମ୍‌ର ଚାବିକାଠି ମତେ ଦେଇଯାଆନ୍ତୁ । ଅନେକଦିନୁ ସଜ୍ଜିତ କୋଠରିରେ ମୁଁ ଦିନ-ଯାପନ କରି ନାହିଁ । ଭାରି କ୍ଳାନ୍ତ ଲାଗୁଛି... । ସେ ହିପ୍‌ପିଣୀ ଜଣକ ଅନୁନୟ କଲାଭଳି କହିଲା ।

ସେ ଯେ ମୋ ଠାରୁ ଚାଳିଶ ଟଙ୍କା ଧାର୍ ନେଇଛି, ସେ ଟଙ୍କା ଫେରସ୍ତ ପାଇବା ପାଇଁ ତା ସହିତ ମୋର ଗୋଟାଏ ସାମୟିକ ଯୋଗସୂତ୍ର ରହିବା ଦରକାର, ସେ ବିଷୟରେ ମୁଁ ହଠାତ୍ ସଚେତନ ହୋଇଉଠିଲି ।

ଲିପି କହିଲା—ତାହାହେଲେ ତ ସମସ୍ୟାର ସମାଧାନ ହୋଇଗଲା । ଜଣେ ବିଦେଶିନୀ ବିନା ଟଙ୍କାରେ ଗୋଟିଏ ସଜ୍ଜିତ କୋଠରିରେ ଏକଦିନ, ଏକ ରାତି ବିଶ୍ରାମ ନେବାର ସୁଯୋଗ ପାଇଲା; ଆମେ ମଧ୍ୟ ଅନ୍ତତଃ ଗୋଟିଏ ଦିନ ପାଇଁ ହେଲେ ବି ଆପଣଙ୍କର ସଖ୍ୟ ପାଇଲୁ...

ଟୁରିଷ୍ଟ ଲଜ୍ ମ୍ୟାନେଜରଙ୍କ ଖାତାରେ ଦସ୍ତଖତ କରି ମୁଁ ରୁମ୍‌ର ଚାବି ଆଣିଲି । ରୁମ୍ ଖୋଲି ଚାବିଟା ସେ ବିଦେଶିନୀ ହାତକୁ ବଢ଼ାଇ ଦେଲାବେଳେ ଲକ୍ଷ୍ୟ କଲି ଗଭୀର କୃତଜ୍ଞତାରେ ତା'ର ଦୁଇ ଆଖି ଛଳ ଛଳ ହୋଇଆସିଲା ।

ସେ ଅସ୍ପଷ୍ଟ କଣ୍ଠରେ କହିଲା—ଟୁ ନାଇଟ୍ ଆଇ ଉଇଲ୍ ସ୍ଲିପ୍ ଉଇଥ୍ ୟୋର ମେମୋରି ।

କଥାଟାର ଅର୍ଥ ବୁଝିବା ଆଗରୁ ଲର୍ଡ ମୋ ହାତ ଧରି ଆଗକୁ ଟାଣିନେଲା ।





ମୁଁ ଖୁବ୍ ଗାଢ଼ ନିଦରେ ଶୋଇଯାଇଥିଲି ।

ଲିପିର ଡାକରେ ନିଦ ଭାଙ୍ଗିଲା । କୋଠରି ଭିତରେ ଜଳୁଥିବା ବିଜୁଳିବତି ଦେଖି ମୋର ଲଜ୍ଜା ହେଲା; ସନ୍ଧ୍ୟା ହୋଇଗଲାଣି । ଅଥଚ ମଧ୍ୟାହ୍ନଭୋଜନ ସାରି ମୁଁ ପ୍ରାୟ ଗୋଟାଏ ବେଳେ ଶଯ୍ୟାଶାୟୀ ହୋଇଥିଲି ।

ଲିପି ହାତରେ ବାମ୍ଫଉଠା ଚା' କପ୍; ଲର୍ଡ ହାତରେ କାଜୁବାଦାମ ପ୍ଲେଟ୍ ।

ମୁଁ ତର ତର ହୋଇ ବାଥରୁମ୍‌ରୁ ମୁହଁ ହାତ ଧୋଇ ଆସି କହିଲି—ଖୁବ୍ ବେଶୀ ସମୟ ଶୋଇଗଲି । ନା ? ଅଥଚ ଶୋଇବା ପାଇଁ ଯେ ମୁଁ  ଗୋଆ ଆସିନି; ଏକଥା ଭୁଲିଯିବା ମୋର ଉଚିତ ନଥିଲା ।

ଲିପି କିଛି କହିଲା ନାଇଁ । କେବଳ ହସିଲା ।

ଲର୍ଡ କହିଲା—ଅଙ୍କଲ୍ ! ମୁଁ ଆଜି ରାତିରେ ତମ ପାଖରେ ଶୋଇବି । ଡାଡି ମମି ଆଜି ଦିନସାରା ଯୁଦ୍ଧ କଲେ । ମୋର ନିଦ ଭାଙ୍ଗିଗଲା...ଆଉ ଶୋଇପାରିନି... ମତେ ଖୁବ୍ ନିଦ ମାଡୁଛି...

ଲର୍ଡ ହାଇ ମାରି ତା'ର ସୁନିଦ୍ରା ହୋଇ ନଥିବାର ପ୍ରମାଣ ଦେଲା ।

ଡାଡି ଆଉ ମମିଙ୍କ ଭିତରେ ଦିନ ସାରା ଯୁଦ୍ଧ ହେଲା—ଏ ସାଙ୍କେତିକ ଶବ୍ଦ-ସମୂହର ପ୍ରକୃତ ଅର୍ଥ ବୁଝି ନପାରି ମୁଁ ଇତସ୍ତତଃ ହେଲି ।

ଲିପି କହିଲା—ଆମ ଦୁଇଜଣଙ୍କ ଭିତରେ ଝଗଡ଼ା ହେଲେ ଲର୍ଡ ଭାବେ ଯୁଦ୍ଧ ହେଲା । ମିଲିଟାରୀ ଡାକ୍ତରଙ୍କ ପୁଅ ତ; ସବୁ କଥାରେ ସେ ଯୁଦ୍ଧର ସୂଚନା ପାଏ ।

ତମେ ପ୍ରାୟ ମାସେ ପରେ ସ୍ୱାମୀର ସଂସାରକୁ ଫେରିଛ । ଦୀର୍ଘ ବିରହ ପରେ ମିଳନର ମୁହୂର୍ତ୍ତ ମଧୁମୟ ହେବାର କଥା । ହଠାତ୍ ଝଗଡ଼ା ହେଲା କାହିଁକି ? ତା ପୁଣି ଏଭଳି ପ୍ରଚଣ୍ଡ ଝଗଡ଼ା ଯେ ଲର୍ଡର ନିଦ ଭାଙ୍ଗିଗଲା !—ମୁଁ ବିସ୍ମୟରେ ପ୍ରଶ୍ନ କଲି ।

ଲିପି ଆଖି ମିଟି ମିଟି କରି ହସିଲା ।

କହିଲା—ଆପଣଙ୍କ ଭ୍ରମଣୋପନ୍ୟାସରେ ପନ୍ଦର ଦିନ ପରେ ସ୍ତ୍ରୀ ସ୍ୱାମୀ ପାଖକୁ ଫେରିଲେ ସ୍ୱାମୀ-ସ୍ତ୍ରୀ ଉଭୟ ଦୀର୍ଘ ସମୟ ଧରି ଆଲିଙ୍ଗନାବଦ୍ଧ ହେବାର ବର୍ଣ୍ଣନା ବୋଧହୁଏ ଥାଏ । କେଜାଣି, ଆଜିକାଲି ମୁଁ ଆଉ ଆପଣଙ୍କ ବହି ପଢ଼େ ନାହିଁ । ଏଭଳି ବର୍ଣ୍ଣନା ଥାଏ କି ନାହିଁ ମତେ ଜଣାନାହିଁ । କିନ୍ତୁ ବାସ୍ତବଜୀବନରେ ସବୁବେଳେ ଏ ସବୁ ଘଟେ ନାହିଁ ।

ମୁଁ ଚା' କପ୍‌ଟା ଶୀଘ୍ର ଶୀଘ୍ର ଶେଷ କରିଦେଇ ଜିଜ୍ଞାସୁ ଦୃଷ୍ଟିରେ ଲିପିର ମୁହଁକୁ ଚାହିଁ ରହିଲି । ମୋ ଆଖିର ଚାହାଣିରେ ଲେଖା ଥିଲା, କାହିଁକି ଏପରି ହୁଏ ନାହିଁ ?

ଲିପି ମୋ ଆଖିର ଭାଷା ହୁଏତ ପଢ଼ିପାରିଲା; କିନ୍ତୁ ନିଜ ମନର ଭାଷା ପ୍ରକାଶ କରି ପାରିଲା ନାହିଁ ।

ସମ୍ଭବତଃ ଲର୍ଡର ଉପସ୍ଥିତି ତାକୁ ଦ୍ୱିଧା-ଦ୍ୱନ୍ଦ୍ୱର ଆବର୍ତ୍ତ ମଧ୍ୟକୁ ଠେଲିଦେଉଥିଲା ।

କେଉଁଠୁ ଗୋଟାଏ ଭୁଲ ବୁଝାମଣାର ଅଗ୍ନିକଣା ଉଡ଼ିଆସି ଏମାନଙ୍କ କାଠି-କୁଟାର ନୀଡ଼ର ହୁଏତ ସନ୍ଦେହର ନିଆଁ ଧରେଇ ଦେଇଯାଇଛି । ଏମିତି ଭୁଲ ବୁଝାମଣା ପ୍ରତି ପରିବାରରେ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଘଟେ । ଶାଶୁ, ନଣନ୍ଦ, ଦିଅର, ଭାଉଜ କିମ୍ବା ଅନ୍ୟ କେହି ନିକଟ ଆତ୍ମୀୟ ପାଖରେ ଥିଲେ ସେମାନେ ମଝିରେ ପଶି ସବୁ ମିଟ୍‌ମାଟ୍ କରିଦିଅନ୍ତି । କିନ୍ତୁ ଏମାନଙ୍କ ପରିବାରରେ ଏ ଦୁହେଁଯାକ ଏକା । ଆତ୍ମୀୟସ୍ୱଜନ ଦୂରର କଥା, କେହି ଓଡ଼ିଆ ପ୍ରତିବେଶୀ ମଧ୍ୟ ଏମାନଙ୍କ ପାଖରେ ନାହାନ୍ତି । ଦୁଇଜଣଙ୍କ ଭିତରେ ଭୁଲ ବୁଝାମଣା ହେଲେ ତାହା ଦୂର କରିବ କିଏ ?

ମୁଁ ସେମାନଙ୍କ ଘରେ ଦିନକର ଅତିଥି । ଏଥିରେ ମୁଣ୍ଡ ପୂରାଇବା କଅଣ ମୋର କର୍ତ୍ତବ୍ୟ ? ମୁଁ ଯାଯାବର; ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଘୂରି ବୁଲିବା ଲୋକ । ଦାମ୍ପତ୍ୟ-କଳହ, ସାଂସାରିକ ଜୀବନ ସମ୍ପର୍କରେ ମୋର ଅବା କି ଅଭିଜ୍ଞତା ଅଛି ?

ମୁଁ ପ୍ରସଙ୍ଗ ଏଡ଼ାଇ ଯିବା ପାଇଁ ଲର୍ଡକୁ କୋଳରେ ଧରି ବାଦାମ ଖାଇବାକୁ ଲାଗିଲି । ଲିପି ମଧ୍ୟ କିଛି ସମୟ ଉଦାସ ଦୃଷ୍ଟିରେ ୟାଲ୍‌ଟିନୋ ପାହାଡ଼ ଆଡ଼କୁ ଅନେଇ ରହିଲା । ତା'ର ଚାହାଣିରେ ଏପରି ଏକ ଆର୍ଦ୍ର-ବିଷଣ୍ଣତାର ମୁଦ୍ରା ଫୁଟିଉଠିଥିଲା ଯେ, ଇଚ୍ଛା କରି ମଧ୍ୟ ମୁଁ ତାକୁ ଏଡ଼ାଇ ଯାଇପାରିଲି ନାହିଁ ।

: ଡାକ୍ତର ଚୌଧୁରୀଙ୍କ ଫେରିବା ବେଳ ହୋଇଗଲାଣି ?

ମୋର ପ୍ରଶ୍ନ ଶୁଣି ଲିପି ନିର୍ଲିପ୍ତ ଭାବରେ ଉତ୍ତରଦେଲା—ରାତ୍ରି ଦଶଟା ଆଗରୁ ସେ କେବେ ଫେରନ୍ତି ନାହିଁ । ମତେ କେବଳ ଅପେକ୍ଷା କରିବାକୁ ହୁଏ । ଆଜି ଆପଣ ଅଛନ୍ତି ବୋଲି ହୁଏତ ସାମାନ୍ୟ ଶୀଘ୍ର ଫେରିପାରନ୍ତି ।

: ହସ୍‌ପିଟାଲରେ କଅଣ ପ୍ରତିଦିନ ତାଙ୍କର ନାଇଟ ଡିଉଟି ଥାଏ ?

: ନା, ତାଙ୍କର କାମ ଅପରାହ୍ଣରେ ଶେଷ ହୋଇଯାଏ । କିନ୍ତୁ ସେ ଡାକ୍ତର ପାଣ୍ଡିତ୍‌ଙ୍କ

କ୍ଲିନିକ୍‌ରେ ବସି ରହି ଫେନି ପାନ କରନ୍ତି । ଆମେ ଯେମିତି ଜଳପାନ କରୁ ଏମାନେ ସେମିତି ଫେନି ପାନ କରନ୍ତି । ଫେନି ଗୋଆର ନିଜସ୍ୱ ମଦ୍ୟ । ଆପଣ ହୋଟେଲ୍, ବାର୍‌କୁ ଗଲେ ଦେଖିବେ ଟୋକା, ବୁଢ଼ା, ବୁଢ଼ୀ ସମସ୍ତେ ଗୋଟାଏ ଗୋଟାଏ ବୋତଲ ଧରି ବସିଛନ୍ତି !

ଡାକ୍ତର ଚୌଧୁରୀ ମଦ୍ୟପାନ କରନ୍ତି ବୋଲି ଲିପି ହୁଏତ ସହ୍ୟ କରିପାରେ ନାହିଁ । ସେ ମଧ୍ୟବିତ୍ତ ଓଡ଼ିଆ ଘରର ଝିଅ । ମଧ୍ୟବିତ୍ତର ନୈତିକ ମୂଲ୍ୟରେ ମଦ୍ୟ ଏକ ନିଷିଦ୍ଧ ପାନୀୟ । କିନ୍ତୁ ଜଣେ ମିଲିଟାରୀ ଡାକ୍ତର ଯେ ଏକ ଜଳ୍‌ପାୟୀ ଜୀବ ହୋଇ ରହିବ; ଏକଥା ସ୍ତ୍ରୀ ହୋଇ ଆଶା କରିବା ବୃଥା ।

ମୁଁ ମୃଦୁ ହସି କହିଲି—ତମ ଦୁଇଜଣଙ୍କ ଭିତରେ ଦିନବେଳା କାହିଁକି ଯୁଦ୍ଧ ଲାଗିଥିଲା, ମୁଁ ବର୍ତ୍ତମାନ ବୁଝିପାରୁଛି । ଡାକ୍ତର ଚୌଧୁରୀ ମଦ୍ୟପାନ କରନ୍ତି ଆଉ ବିଳମ୍ବରେ କ୍ୱାର୍ଟରକୁ ଫେରନ୍ତି ବୋଲି ତମେ ହୁଏତ ସହ୍ୟ କରି ପାର ନାହିଁ । ଏକାକିନୀ ଛୋଟ ପିଲାଟିକୁ ନେଇ ରାତ୍ରି ଦଶଟା ପର୍ଯ୍ୟନ୍ତ ମଦ୍ୟ-ପାୟୀ ସ୍ୱାମୀଙ୍କ ପ୍ରତୀକ୍ଷା କରିବା ନିଶ୍ଚୟ ଖୁବ୍ ଯନ୍ତ୍ରଣାର କଥା । କିନ୍ତୁ ତମେ ଭୁଲିଯିବା ଉଚିତ ନୁହେଁ, ତମର ସ୍ୱାମୀ ଜଣେ ମିଲିଟାରୀ ଡାକ୍ତର । ଏଠାରେ ପାର୍ଟିମାନଙ୍କରେ ମଦ୍ୟପାନ କରିବା ହେଉଛି ସାଧାରଣ ସୌଜନ୍ୟ ।

ମୋ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ଲିପି କହିଲା—ଆପଣ କଅଣ ଭାବୁଛନ୍ତି ମୁଁ ଆପଣଙ୍କ ଭଳି ଜଣେ କେବଳ ଚା' ପାୟୀ ପ୍ରାଣୀ ! ପାର୍ଟିମାନଙ୍କରେ ମୁଁ ମଧ୍ୟ ବେଳେ ବେଳେ ୱାଇନ୍ ଖାଏ....କିନ୍ତୁ ଏଥର ବସାକୁ ଫେରି ଦେଖିଲି ବେଡ୍‌ରୁମ୍ ସାରା ଶୂନ୍ୟ ହେରୋଇନ୍ ଆଉ ଇଂଜେକ୍‌ସନର ଖାଲି ଶିଶିରେ ଭର୍ତ୍ତି !

ଏସିଡ୍‌ମାନେ L.S.D. ରସାୟନ ଶାସ୍ତ୍ରରେ ଯାହାକୁ କୁହାଯାଏ ! Lysergic Acid & thalomite.

: ଡାକ୍ତର କଅଣ ନିଜେ L.S.D. ଆଉ Heroin ଇଂଜେକସନ୍ ନେଇ ନିଶା କରନ୍ତି ? —ମୁଁ କିଞ୍ଚିତ୍ ଭୟ ଓ କିଞ୍ଚିତ୍ ବିସ୍ମୟରେ ପ୍ରଶ୍ନ କଲି ।

ଲିପି ଉତ୍ତର ଦେଲା—ସେତ ନିଜେ ମନାକରୁଛନ୍ତି । କିନ୍ତୁ ମୋ ମନ ମାନୁନି । ନିଜେ ନନେଲେ ମଧ୍ୟ ଅନ୍ୟମାନଙ୍କୁ ସେ ନିଶା ଇଂଜେକ୍‌ସନ୍ ଦେଇଛନ୍ତି । ମୋର ଅନୁପସ୍ଥିତିରେ ମୋର ଶୟନକକ୍ଷ ନିଶାଖୋରମାନଙ୍କ କ୍ଲିନିକ୍‌ରେ ପରିଣତ ହୋଇଯାଇଛି ।

କଥା କହିବା ଭିତରେ ଲିପିର ଆଖି କୋଣରେ ଅଶ୍ରୁ-ସଂଚାର ହୋଇଥିଲା ।

ଏଥର ସତକୁ ସତ ତା ପାଇଁ ମୋ ମନ ସମବେଦନାରେ ଓଦା ହୋଇଗଲା । ମୁଁ ତା'ର ଅସହାୟା ଅବସ୍ଥା ବେଶ୍ ବୁଝିପାରିଲି । ଯାହା ହେଲେ ବି ସେ ମୋର ଜଣେ ଏକଦା-ଅନ୍ତରଙ୍ଗ ବନ୍ଧୁର ଏକମାତ୍ର ଭଉଣୀ । ଏଲ୍.ଏସ୍.ଡି., ହେରୋଇନ୍ ଭଳି ମାରାତ୍ମକ ନିଶା ଇଂଜେକସନ୍ ବ୍ୟାବହାର କରୁଥିବା ଜଣେ ପୁରୁଷ ପାଖରେ ଚଳିବା ଯେ ତା ପକ୍ଷରେ ଖୁବ୍ ରିସ୍କି, ସେ କଥା ମୁଁ ଅନୁମାନ କରିପାରୁଥିଲି ।

ମୋର ମନୋଭାବ ଲିପି ହୁଏତ ବୁଝିପାରିଲା ।

ଆଖି କୋଣରେ ଜକେଇ ଆସିଥିବା ଲୁହ କେଇବିନ୍ଦୁ ପୋଛିନେଇ ସେ କହିଲା— ଆପଣଙ୍କ ସାଙ୍ଗରେ ଆସିଲେ ବି ଆପଣଙ୍କୁ ଆମ ବସାକୁ ଆସିବା ପାଇଁ ମୁଁ ଆମନ୍ତ୍ରଣ କରିବାକୁ ଭୟକରୁଥିଲି । କାରଣ ମୋ ଅନୁପସ୍ଥିତିରେ ଏ ବସା ନର୍କ ହୋଇପଡ଼ିଛି କି ସ୍ୱର୍ଗ ହୋଇରହିଛି; ସେ କଥା ମୁଁ ନିଜେ ଜାଣି ନଥିଲି । ସେ ନିଜେ ଯେତେବେଳେ ଆପଣଙ୍କୁ ଜୋର୍ କରି ଡାକିଆଣିଲେ ମୁଁ ମନେ ମନେ ଧରିନେଇଥିଲି ଘରେ କିଛି ଆବର୍ଜନା ନାହିଁ । କିନ୍ତୁ ଶୋଇବା ଘରେ ପ୍ରବେଶ କରି ଦେଖେ ତ ଅସଂଖ୍ୟ ଶୂନ୍ୟ ଭଙ୍ଗା ଏଲ୍.ଏସ୍.ଡି. ହେରୋଇନ୍ ଶିଶି.... ଏଥିରେ କେହି ନିଜ ମୁଣ୍ଡ ଥଣ୍ଡା ରଖିପାରେ ?

: ମୁଣ୍ଡ ଥଣ୍ଡା ରଖିବାକୁ ହିଁ ହେବ । ଏହା ଏଭଳି କିଛି ଅସାଧ ଘଟଣା ନୁହେଁ । ଡାକ୍ତରଙ୍କ ପାଖକୁ ରୋଗୀ ଆସିବେ । ଇଂଜେକସନ୍ ନେବେ । ଏ ତ ସାଧାରଣ କଥା ! —ମୁଁ ତାକୁ ସାହସ ଦେବା ପାଇଁ କହିଲି ।

ମ୍ଲାନ ହସରେ ଲିପିର ମୁହଁ ଉଦ୍ଭାସିତ ହେଲା ।

ସେ କହିଲା—ତାହାହେଲେ ମତେ ମଧ୍ୟ ହେରୋଇନ୍ ଇଂଜେକସନ ନେବାକୁ ପଡ଼ିବ । ଶୁଣିଛି ଯେଉଁମାନେ ହେରୋଇନ୍ ନିଶାଗ୍ରସ୍ତ; ସେମାନଙ୍କୁ ଦିନକୁ ଚାରିଟା ଇଂଜେକ୍ସନ ନେବାକୁ ହୁଏ । ଏଥିପାଇଁ ଖର୍ଚ୍ଚ ହୁଏ ପାୟ ଶହେ ଟଙ୍କା । ଅବଶ୍ୟ ଡାକ୍ତର ଚୌଧୁରୀଙ୍କର ଟଙ୍କାର ଅଭାବ ନାହିଁ ।

ଡାକ୍ତର ଚୌଧୁରୀରଙ୍କର ଟଙ୍କାର ଅଭାବ ନାହିଁ— ଏ କଥାଟା ଲିପି ଏପରି ବ୍ୟଙ୍ଗାତ୍ମକ ଭଙ୍ଗୀରେ ଉଚ୍ଚାରଣ କଲା ଯେ, ମନେହେଲା ସ୍ୱାମୀ ପ୍ରଚୁର ଟଙ୍କା ରୋଜଗାର କରିବା ପଛରେ ତା'ର ଆଦୌ ସମର୍ଥନ ନାହିଁ ।

ଡାକ୍ତର ଚୌଧୁରୀ କଅଣ ଗୋଆନିଜ୍‌ମାନଙ୍କୁ ଏଲ. ଏସ୍.ଡି.ଆଉ ହେରୋଇନ୍ ନିଶା ଇଂଜେକସନ୍ ଦେଇ ଅର୍ଥ ଶୋଷଣ କରନ୍ତି ? କିନ୍ତୁ ତାଙ୍କୁ ମୁଁ ଯେତିକି ସମୟ ଦେଖିଛି, ଯେତିକି ବୁଝିଛି, ସେଥିରେ ତାଙ୍କୁ ସେଭଳି ମନେକରିବାର କିଛି କାରଣ ନାହିଁ । ଖୁବ୍ ଅଳ୍ପକଥା କହନ୍ତି ଡାକ୍ତର ଚୌଧୁରୀ । ବେଶ୍ ଭଦ୍ର, ବନ୍ଧୁବତ୍ସଳ ବ୍ୟକ୍ତି । ଯଦି ଅନ୍ୟକୁ ନିଶା-ଇଂଜେକସନ୍ ଦେବା ସହିତ ନିଜେ ମଧ୍ୟ କିଛି ନିଶା-ସେବନ କରୁଥାଆନ୍ତି; ସେଥିରେ ତାଙ୍କୁ ଦୋଷ ଦିଆଯାଇ ପାରିବ ନାହିଁ ।

ଆଜିକାଲି କଲେଜ ଛାତ୍ରମାନେ ମଧ୍ୟ ମରଳୁଆନା, ଏଲ.ଏସ୍.ଡି.ର ଭକ୍ତ !

ହୁଏତ ଲିପି ନିଜର ମଧ୍ୟବିତ୍ତ ମାନସିକତା ଯୋଗୁ ଛାଇକୁ ଦେଖି ଭୂତ ବୋଲି ଭୟ କରୁଛି । ଜଣେ ମିଲିଟାରୀ ଡାକ୍ତରଙ୍କ ପତ୍ନୀ ହେବାକୁ ହେଲେ ତାକୁ ଏଇ ମଧ୍ୟବିତ୍ତ-ନୈତିକତାର ଊର୍ଦ୍ଧ୍ୱକୁ ଉଠିବାକୁ ପଡ଼ିବ । କିନ୍ତୁ ଏଇ ଊର୍ଦ୍ଧ୍ୱକୁ ଉଠିବାର ଶକ୍ତି ତାକୁ ନିଜେ ନିଜ ଭିତରୁ ସଂଗ୍ରହ କରିବାକୁ ହେବ, ଇଚ୍ଛା କଲେ ଅନ୍ୟ କେହି ତାକୁ ଏଥିରେ ସାହାଯ୍ୟ କରି ପାରିବେ ନାଇଁ ।

ମୁଁ ଆସିଛି ଗୋଆର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିବା ପାଇଁ । ଗୋଆର ଅଭ୍ୟନ୍ତରରେ ଜଣେ ମିଲିଟାରୀ ଡାକ୍ତରଙ୍କ ଗୃହ ମଧ୍ୟରେ ଦାମ୍ପତ୍ୟ-ଜୀବନର ସୌନ୍ଦର୍ଯ୍ୟ କିପରି ଏଲ.ଏସ୍.ଡି. ହେରୋଇନ୍ ନିଶାର ଦଂଶନରେ ଫିକା ପଡ଼ିଯାଉଛି; ସେ ଦୃଶ୍ୟ ଦେଖିବା ମୋର କଅଣ ଦରକାର ?

ମୁଁ ଲର୍ଡକୁ କଥା ଦେଇଥିଲି ଆଜି ତାକୁ କାଡବରି ଚକୋଲେଟ କିଣିଦେବି ।

ସେ କଥା ସେ ମତେ ସ୍ମରଣ କରାଇଦେଲା ।

ମୁଁ ତାକୁ ସାଙ୍ଗରେ ନେଇ ରାସ୍ତାକୁ ବାହାରିପଡ଼ିଲି ।

ସେଦିନ ରାତିରେ ଡାକ୍ତରଙ୍କ ଆସିବା ସତରେ ଖୁବ୍ ବିଳମ୍ବ ହେଲା ।

ପ୍ରାୟ ରାତି ଦଶଟା ବେଳକୁ ଜୋର୍ କରି ଖାଇବାକୁ ଦେଇ ଲିପି ମତେ ମୋ କୋଠରିକୁ ଶୋଇବା ପାଇଁ ପଠାଇଦେଲା ।

ଲର୍ଡ ମଧ୍ୟ ଆସି ଶୋଇଲା ମୋ ପାଖରେ ।

ମୁଁ ବିଛଣାରେ ଅଧଘଣ୍ଟାଏ ଗଡ଼ାଗଡ଼ି କଲାପରେ ଶୋଇଯାଇଥିଲି । କଞ୍ଚା ନିଦ ଲାଗିଆସିଥିଲା । ହଠାତ୍ ଲର୍ଡ ମତେ ଉଠାଇ ଦେଇ କହିଲା— ଅଙ୍କଲ୍ ! ଯୁଦ୍ଧ ଲାଗିଯାଇଛି । ଡାଡି ଆଉ ମମି ଯୁଦ୍ଧ କରୁଛନ୍ତି ।

ମୁଁ କାନଡେରି ଶୁଣିଲି ଲିପି ଆଉ ଡାକ୍ତର ଚୌଧୁରୀଙ୍କ ମଧ୍ୟରେ କଥା କଟାକଟି ଚାଲିଛି ।

: ତମେ ଯଦି ରାତି ଦଶଟା ଆଗରୁ କ୍ୱାର୍ଟରକୁ ନଫେର କାଲି ମୁଁ ଭାଇ ପାଖକୁ ବମ୍ବେ ଫେରିଯିବି ।

: ରୋଗୀମାନଙ୍କୁ ମୃତ୍ୟୁମୁଖରେ ଛାଡ଼ିଦେଇ ଘରକୁ ଫେରିବା ଡାକ୍ତରର ଧର୍ମ ନୁହେଁ । ମନେରଖ, ତମେ ଜଣେ ଡାକ୍ତରଙ୍କ ସହଧର୍ମିଣୀ !

: ରୋଗୀସେବା କଥା ମିଛ । ତମେ ମିଲିଟାରୀ ଡାକ୍ତର । ଫର୍ଣ୍ଣଡିଜ୍‌ଙ୍କ କ୍ଲିନିକ୍‌ରେ ଚୋରା ନିଶା ଔଷଧ ବ୍ୟବସାୟ କରିବା ତମର କର୍ତ୍ତବ୍ୟ ନୁହେଁ ।

: କିନ୍ତୁ ସେଠାରୁ ଯେଉଁ ଟଙ୍କା ମିଳେ; ସେ ଟଙ୍କା ମୁଁ ଏକା ଉପଭୋଗ କରେ ନାଇଁ ।

: ସେ ଟଙ୍କା ପ୍ରତି ମୋର କୌଣସି ଲୋଭ ନାଇଁ । ମୁଁ ଜାଣେ ତମେ ଔଷଧ ନାମରେ ନିଶାଦ୍ରବ୍ୟ ଆଣି ଚୋରା କାରବାର କର । ଲୋକଙ୍କୁ ନିଶାଗ୍ରସ୍ତ କରି ସେମାନଙ୍କ ପକେଟରୁ ଟଙ୍କା କାଢ଼ିନିଅ । ଜଣେ ମିଲିଟାରୀ ଡାକ୍ତର ପକ୍ଷରେ ଏହା ଘୋର ଅନ୍ୟାୟ ।

: ଲିପି ! ଏ ଚୋରା ବ୍ୟବସାୟ କଥା ମୁଁ ତମ ମୁହଁରୁ ଦ୍ୱିତୀୟ ଥର ଶୁଣିବାକୁ ଚାହେଁ ନାଇଁ । ଔଷଧ ଲାଇସେନ୍‌ସ ଡକ୍ଟର ଫର୍ଣ୍ଣାଡିଜ୍‌ଙ୍କର...ଔଷଧ ପାଇଁ ମାଦକଦ୍ରବ୍ୟ ଆଣି ଚୋରାରେ ବିକ୍ରିକରିବା ଦାୟିତ୍ୱ ତାଙ୍କର । ମୋ ନାମ ତା ସହିତ ଯୋଡ଼ି ଦିଅ ନାଇଁ...

: ମୁଁ ତମକୁ ଅନେକଥର କହିଛି ଫର୍ଣ୍ଣାଡିଜ୍ କ୍ଲିନିକ୍‌କୁ ତମେ ଯାଅ ନାହିଁ... ଲୋକଙ୍କୁ ନିଶା ଖୁଆଇ ସେମାନଙ୍କର ସର୍ବନାଶ କରନାହିଁ... ଘରୋଇ ରୋଗୀଙ୍କ ଚିକିତ୍ସା କରିବା ତମ ପକ୍ଷରେ ଘୋର ଅନ୍ୟାୟ ।

ଲର୍ଡ ମୋ ଛାତିରେ ମୁହଁ ଜାକି ଦେଇ ଖନେଇ ଖନେଇ କହିଲା— ଅଙ୍କଲ୍ ! ତମେ ନିଶା ଖାଅ ? ଖାଅନା ? ମୁଁ କିନ୍ତୁ ଖାଇବି... ଦେଖିବ ଅନେକ ନିଶା ଶିଶି ମୁଁ ଲୁଚାଇ ରଖିଛି—ଡାଡି, ମମି ଜାଣନ୍ତି ନାହିଁ...

ଲର୍ଡର କଥା ଶୁଣି ମୋ ମେରୁଦଣ୍ଡରେ ଏକ ତୀବ୍ର ଶୀତଳ ଶିହରଣ ସଞ୍ଚରିଗଲା । ଲର୍ଡ ଯେଉଁ ନିଶା-ଶିଶି ଲୁଚାଇ ରଖିଛି ବୋଲି କହୁଛି; ସେଗୁଡ଼ିକ ହୁଏତ ଶୂନ୍ୟ, ଭଙ୍ଗା ଶିଶି ! ଶିଶି ମଧ୍ୟରୁ ହେରୋଇନ୍ ଏଲ୍.ଏସ.ଡି. ନିର୍ଯାସ ଡାକ୍ତର ଚୌଧୁରୀଙ୍କ ଇଂଜେକସନ୍ ସିରିଂଜ ମଧ୍ୟକୁ ଚାଲିଯାଇଛି ।

ଲର୍ଡ ଆଜି ଚାରିବର୍ଷର ଶିଶୁ ।

ଶୂନ୍ୟ ଶିଶିକୁ ପୂର୍ଣ୍ଣ ଶିଶି ବୋଲି ସେ ମନେକରିଛି । କିନ୍ତୁ ବୟସ୍କ ହେଲା ପରେ ଯେଉଁଦିନ ତା ହାତରେ ଅଭଙ୍ଗା ଶିଶି ପଡ଼ିବ...

ମୁଁ ବୁଝିପାରିଲି, କଅଣ ପାଇଁ ସବୁ ଥାଇ ମଧ୍ୟ କିଛି ନଥିବାର ଯନ୍ତଣାରେ ଲିପିର ସାରା ମୁହଁ ରକ୍ତହୀନ ବିବର୍ଣ୍ଣ ଦେଖାଯାଉଛି ।





ମିରାମାର୍ ବେଳାଭୂଇଁରେ ସେହି ବିଦେଶିନୀକୁ ଦେଖି ମୁଁ ଚମକିଗଲି । ମୋର ଧାରଣା ହୋଇଥିଲା ତା ସହିତ ଆଉ କୌଣସି ଦିନ ହୁଏତ ଦେଖା ହେବନାହିଁ । ବମ୍ବେ ବସ୍‌ଷ୍ଟାଣ୍ଡରେ ଧାର୍ ଦେଇଥିବା ଚାଳିଶ ଟଙ୍କା ଫେରସ୍ତ ମିଳିବାର ଆଶା ଧାର୍ ଦେଲାବେଳେ ମଧ୍ୟ ମୁଁ ରଖି ନଥିଲି । କିନ୍ତୁ ମୁଁ ଫେରିବା ଆଗରୁ ମୋ ଟୁରିଷ୍ଟ ଲଜ୍‌ର ସେଇ ସଂରକ୍ଷିତ କୋଠରିରେ ଗୋଟିଏ ରାତ୍ରି କଟାଇ ସକାଳୁ ସକାଳୁ ଟୁରିଷ୍ଟ ବ୍ୟୁରୋର ମାନେଜରଙ୍କୁ ଚାବି ଦେଇ ସେ ଚାଲିଯିବ, ଏକଥା ମୁଁ କେବେ ଆଶା କରି ନଥିଲି ।

ଲିପିର ଘରୁ ଟୁରିଷ୍ଟ ଲଜ୍‌କୁ ଫେରିଲାବେଳେ ମୁଁ ମନେ ମନେ ଭାବୁଥିଲି, ସେଇ ହିପ୍‌ପିଣୀ ଗାଲରେ ହାତଦେଇ ମୋ ଫେରିବା ବାଟକୁ ଚାହିଁ ବସିଥିବ । ମତେ ଦେଖିବା ମାତ୍ରେ ଅନୁଯୋଗଭରା କଣ୍ଠରେ କହିବ—ମିଷ୍ଟର ଅଙ୍କଲ୍ ! ଖୁବ୍ ଡେରି କରିଦେଲ । ଅପେକ୍ଷା କରି ମୋ ଆଖି ବ୍ୟଥାତୁର ହୋଇଉଠିଲାଣି । ଏଇ ନିଅ—ତମ ରୁମ୍‌ର ଚାବି । ମୁଁ ମୋର ହିପ୍‌ପି ସାଙ୍ଗମାନଙ୍କ ପାଖକୁ ଚାଲିଲି । ମୋ ପାଖରେ ତମ ରୁମ୍‌ର ନମ୍ବର ରହିଲା । ତମ ଧାର ଟଙ୍କା ତମେ ଗୋଆ ଛାଡ଼ିବା ଆଗରୁ ତମପାଖରେ ପହଞ୍ଚିଯିବ ।

ମୁଁ ମୋର ବିଳମ୍ବିତ ପ୍ରତ୍ୟାବର୍ତ୍ତନ ପାଇଁ ଦୁଃଖ ପ୍ରକାଶ କରିବି ଏବଂ ସୌଜନ୍ୟ ରଖି କହିବି—ସେ ଚାଳିଶ ଟଙ୍କା ଫେରସ୍ତ ଦେବାପାଇଁ ବ୍ୟସ୍ତ ହେବ ନାଇଁ ମିସ୍ ଆମେରିକା ! ଏ ସାମାନ୍ୟ ଟଙ୍କା ମୋର ତମପାଇଁ ପ୍ରୀତି ଉପହାର ।

ହିପ୍‌ପିଣୀ ହୁଏତ ପ୍ରତିବାଦ କରିବ । କହିବ—ନା, ନା, ଟଙ୍କାଟା ଦରକାର ବେଳେ ମୁଁ ମାଗିକରି ନେଇଛି । ସେ ଟଙ୍କାର ପରିମାଣ ଯେତେ ସାମାନ୍ୟ ହେଉ ପଛକେ ତମକୁ ଫେରସ୍ତ ନେବାକୁ ହିଁ ହେବ ।

ମତେ ରସିକତା କରିବାକୁ ଏକ ସୁବର୍ଣ୍ଣ ସୁଯୋଗ ମିଳିଯିବ ।

ମୁଁ ଈଷତ୍ ଗମ୍ଭୀର ହୋଇ କହିବି—ନା, ନା, ଆମେରିକାକୁ ଋଣୀକରି ରଖିବାର ଏ ସୁଯୋଗ ମୁଁ ହାତଛଡ଼ା କରିବାକୁ ଚାହେଁନାଇଁ । ଆମେରିକା ଇଣ୍ଡିଆ ଭଳି ବହୁ ବିକାଶଶୀଳ ଦେଶକୁ ଅଜସ୍ର ଡଲାର୍ ସାହାଯ୍ୟ ଦେଇଛି, ଦେବ । ଅନ୍ତତଃ ଜଣେ ଆମେରିକା ଲଳନାକୁ

ଚାଳିଶ ଟଙ୍କା ଋଣଦେଇ ଋଣୀକରି ରଖିବାର ଅହଂକାର ମୋର ସ୍ମୃତିକୋଷରେ ସଞ୍ଚିତ ହୋଇ ରହିଥାଉ ।

କିନ୍ତୁ ଟୁରିଷ୍ଟ ବ୍ୟୁରୋରେ ମୋର ସଂରକ୍ଷିତ ରୁମ୍ ଦରଜାରେ ଗୋଟାଏ ତାଲା ଝୁଲୁଥିବା ଦେଖି ମୋର ସେ ଦିବାସ୍ୱପ୍ନ ହଠାତ୍ ଭାଙ୍ଗି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ପଛରୁ ଧକ୍କା ଖାଇଲାଭଳି ଚମକିପଡ଼ିଲି । ଝିଅଟା ଗଲା କୁଆଡ଼େ ? ମୋ ରୁମ୍‌ର ଚାବି !

ରୁମ୍‌ର ବୟ୍ ମତେ ବାରଣ୍ଡାରେ ହତଚକିତ ଭାବରେ ଠିଆହୋଇଥିବା ଦେଖି କହିଲା—ସାହେବ ! ମେମ୍ ସାହେବ ଚାଲିଗଲେ । ରୁମ୍‌ର ଚାବି ଦେଇଯାଇଛନ୍ତି ।

ମୁଁ ଆଶ୍ୱସ୍ତ ହେଲି । ହୁଏତ ଜଳଖିଆ ଖାଇବା ପାଇଁ କିମ୍ବା ବିଅର୍ ପିଇବା ପାଇଁ ହିପ୍‌ପିଣୀ କିଛି ସମୟ ପାଇଁ ବାହାରକୁ ଯାଇଛି ।

କିନ୍ତୁ ରୁମ୍ ଖୋଲିଲା ପରେ ମୋର ଆଉଥରେ ସ୍ୱପ୍ନ ଭଙ୍ଗହେଲା ।

ନା, ତା'ର ସବୁ ଜିନିଷପତ୍ର ସେ ନେଇଚାଲିଯାଇଛି । କୋଠରି ଭିତରେ ଛାଡ଼ିଯାଇଛି ଅନେକ ଆବର୍ଜନା, ଅର୍ଦ୍ଧଦଗ୍ଧ ସିଗାରେଟ୍, କଦଳୀ ଆଉ କମଳା ଚୋପା, ଗଞ୍ଜେଇ ଏବଂ ଚରସର ମାଦକ ଗନ୍ଧ !

ଝିଅଟାର ରୁଚି କି ଅପରିଚ୍ଛନ୍ନ !

ରୁମ୍‌ର ବୟ୍‌କୁ ଡାକି ପଚାରିଲି—ମେମ୍ ସାହେବ ଗଲାବେଳେ କିଛି କହିଯାଇଛି ? ଆଉ ଫେରିବ ?

ଗୋଆନିଜ୍ କିଶୋର ମୋର ପ୍ରଶ୍ନ ପ୍ରଥମେ ହୁଏତ ଠିକ୍ ବୁଝି ପାରିଲା ନାହିଁ ।

ତା'ପରେ କଅଣ ଭାବି କହିଲା—ମେମ୍ ସାହେବ ହିପ୍‌ପି । କାଲେନ୍‌ଗୁଟେ ବିଚ୍‌ରେ ବହୁତ ହିପ୍‌ପି ଖୁବ୍ ହୋହଲ୍ଲା କରନ୍ତି ।

ତା'ପରେ ମୁଁ ତାକୁ ଆଉ କିଛି ପ୍ରଶ୍ନ କରି ନିଜ ମନର ଦୁର୍ବଳତା ପ୍ରକାଶ କରିବାକୁ ଚାହିଁଲି ନାଇଁ ।

ବୟ୍ ରୁମ୍ ସଫାକରିଦେଲା । ବେଡ୍‌ର ବିଛଣା ମଧ୍ୟ ବଦଳାଇଦେଲା । ଝରକା ଖୋଲି ଫ୍ୟାନ୍ ଦେବାପରେ ଗଞ୍ଜେଇ ଆଉ ଚରସ୍‌ର ଉତ୍କଟ ମାଦକ ଗନ୍ଧ ମଧ୍ୟ କମିଗଲା; କିନ୍ତୁ ହିପ୍‌ପିଣୀ ସହିତ ଆକସ୍ମିକ ଦେଖା, ପରିଚୟ ଏବଂ ତା'ର ପଳାୟନର ସ୍ମୃତି ମନକୁ କିଛି ସମୟ ଏକ ଅକାରଣ ଦୁଃଖରେ ଭରିଦେଲା । ମନେହେଲା, ମୁଁ ତାକୁ ପରମ ବିଶ୍ୱାସରେ ମୋର ସଂରକ୍ଷିତ କୋଠରିଟି ଏକଦିନ, ଏକରାତି ପାଇଁ ଛାଡ଼ିଦେଇଗଲି । ଯିବା ପୂର୍ବରୁ ଅନ୍ତତଃ ସେଥିପାଇଁ ସେ ମତେ ଥରେ ଧନ୍ୟବାଦ ଜଣାଇ ଯିବା ଉଚିତ ଥିଲା !

ସଂସାରରେ କୃତଜ୍ଞତାବୋଧ ବୋଲି କିଛି ବୋଧହୁଏ ଆଉ ଅବଶିଷ୍ଟ ନାହିଁ । ବିଶେଷତଃ ଏଇ ଜେନେରେସନ୍‌ର ପିଲାମାନେ କୃତଜ୍ଞତାବୋଧକୁ ଏକ ଅପମାନଜନକ ହୀନମନ୍ୟତା ବୋଲି ମନେକରନ୍ତି । ହିପ୍‌ପିଣୀଟି ସେଇ ଅକୃତଜ୍ଞ ପ୍ରଜନ୍ମର ପ୍ରତୀକ !

ତା ଆରଦିନ ସକାଳୁ ଟୁରିଷ୍ଟ ବସ୍‌ରେ ବସି ପ୍ରଥମେ ଗୋଆର କିଛି ଦର୍ଶନୀୟ ସ୍ଥାନ ଦେଖିଆସିବି ବୋଲି ସ୍ଥିର କରି ସତରଟଙ୍କା ଦେଇ ଗୋଟାଏ ଟିକେଟ କିଣିପକାଇଲି । ପ୍ରାୟ ନଅଟା ବେଳକୁ ପାଂଜିମ୍‌ରୁ ବସ୍ ଛାଡ଼ିଲା । ମିରାମାର୍ ବିଚ୍ ଦେଖିବା ପାଇଁ ବସ୍ ଅଟକିବା ବେଳେ ଗାଇଡ୍ ସମସ୍ତଙ୍କୁ ସତର୍କ କରାଇ ଦେଇଥିଲା—ମାତ୍ର ପନ୍ଦର ମିନିଟ ମଧ୍ୟରେ ବସ୍‌କୁ ଫେରିଆସିବାକୁ ହେବ । ଗ୍ୟାସ୍‌ପାର ଡାୟାସ ବିଚ୍ ଖୁବ୍ ରମଣୀୟ ହେଲେ ମଧ୍ୟ ଛୋଟ ବିଚ୍ । ପାଂଜିମ୍ ସହର ମଧ୍ୟରେ ଏଭଳି ବେଳାଭୂମି ଆଉ ଦ୍ୱିତୀୟ ନାହିଁ । ଏଇ ବିଚ୍‌ର ଅନ୍ୟନାମ ମିରାମାର୍ ! ପନ୍ଦର ମିନିଟ ମଧ୍ୟରେ ନଫେରିଲେ, ବସ୍ ଛାଡ଼ିଦେବ ।

ମିରାମାର୍ ବେଳାଭୂମିର ରଜତ ରେଣୁରେ ଅଳ୍ପ କିଛି ଦୂର ଗଲାପରେ ମୁଁ ଦେଖିଲି ସେଇ ସାମୁଦ୍ରିକ ବେଳାଭୂମି ଉପରେ ବସି ତରଙ୍ଗାୟିତ ସମୁଦ୍ର ଗର୍ଭକୁ ଯେଉଁ ଝିଅଟି ଚାହିଁରହିଛି; ସେ ହେଉଛି ସେଇ ହିପ୍‌ପିଣୀ ।

: ହାଓ ଷ୍ଟ୍ରେଂଜ୍ ! ଇଉ ଆର ହିୟର୍ ?—ମୋ ପାଟିରୁ ସ୍ୱତଃ ଇଂରେଜୀ ଶବ୍ଦ କେତୋଟି ବନ୍ଧୁକ ନଳୀରୁ ଛୁଟନ୍ତ ଗୁଳି ଭଳି ନିଷ୍କ୍ରାନ୍ତ ହୋଇଗଲା ।

ବିଦେଶିନୀ ମତେ ଫେରି ଚାହିଁଲା । ତା'ର ଚିଲା ଚିଲା ଆଖିକୋଣରେ ଈଷତ୍ ହସର ଦ୍ୟୁତି ଦେଖାଗଲା । ମୋର ଧାରଣା ହେଉଥିଲା, ମତେ ଆକସ୍ମିକ ଭାବରେ ଦେଖି ସେ ଚମକି ପଡ଼ିବ । ଅପ୍ରତିଭ ହେବ । ଟୁରିଷ୍ଟ ଲଜ୍‌ରେ ମତେ ନ କହି ଚାଲିଆସିଛି ବୋଲି କ୍ଷମା ମାଗିବା ପାଇଁ ଠିଆହେବ । କିନ୍ତୁ ଏ ସବୁ ପ୍ରତ୍ୟାଶିତ କିଛି ଘଟିଲା ନାହିଁ । ଆଖି କୋଣରେ କେବଳ ଝଲସିଉଠିଲା ସାମାନ୍ୟ ହସର ଇସାରା ।

ଅର୍ଥାତ୍ ମତେ ଦେଖି ସେ ଚମକିପଡ଼ିନାଇଁ, ଖୁସିହୋଇଛି ।

ମତେ ହାତଠାରି ଡାକିଲା ତା ପାଖରେ ବସିବାପାଇଁ ।

କିନ୍ତୁ ମୁଁ ଯେ ସତର ଟଙ୍କା ଟିକେଟ୍‌କାଟି ଟୁରିଷ୍ଟ ବସ୍‌ରେ ଗୋଆ ଭ୍ରମଣରେ ବାହାରିଛି ! ମତେ ପନ୍ଦର ମିନିଟ ମଧ୍ୟରେ ବେଳାଭୂମି ଦେଖିସାରି ବସ୍ ଭିତରକୁ ଫେରିଯିବାକୁ ହେବ ! ନହେଲେ ବସ୍ ଛାଡ଼ିଦେବ !

ମୁଁ ଖୁବ୍ ସନ୍ତର୍ପଣରେ ତାଠାରୁ ଦୂରତ୍ୱ ରକ୍ଷାକରି ବସିଲି ।

କହିଲି—ମୁଁ ଗୋଟାଏ ଟୁରିଷ୍ଟ ବସ୍‌ରେ ଗୋଆ ଦେଖି ବାହାରିଛି । ତମେ ଯିବ ? ଆଉ ବୋଧହୁଏ ଦୁଇ-ତିନିଟା ସିଟ୍ ଖାଲି ଅଛି ।

ସେ ମୋ ମୁହଁକୁ ନଚାହିଁ ଅନ୍ୟମନସ୍କ ଭାବରେ କହିଲା—ଟୁରିଷ୍ଟ ବସ୍‌ରେ ସ୍ଥାନସବୁ ଦେଖାଯାଏ, କିଛି ଉପଭୋଗ କରି ହୁଏନା । ଟୁରିଷ୍ଟ ବସ୍‌ରେ ଘୂରି ଗୋଆ ଦେଖିବା ଯାହା ଗୋଆର ବିଭିନ୍ନ ଦର୍ଶନୀୟ ସ୍ଥାନର ଯେଉଁସବୁ ରଙ୍ଗିନ୍ ଛବି ଟୁରିଷ୍ଟ ଡିପାର୍ଟମେଣ୍ଟ ଉଠାଇ ଟୁରିଷ୍ଟ ବ୍ୟୁରୋରେ ଟଙ୍ଗାଇଛି, ତାକୁ ଦେଖିବା ମଧ୍ୟ ସେଇଆ । ସତ ନୁହେଁ ?

ମୁଁ କିଛି ଉତ୍ତର ଦେବା ଆଗରୁ ସେ ଦୂର ସମୁଦ୍ର ଉପରେ ଚକ୍କର କାଟୁଥିବା ଏକ ନୀଳ ବିହଙ୍ଗକୁ ଲକ୍ଷ୍ୟ କରି ପଚାରିଲା— ଏ ଚଢ଼େଇର ନାମ କଅଣ ?

: ଏକ ନାମହୀନ ବିହଙ୍ଗ । ନାମରେ କ'ଣ ଅଛି ? —ମୁଁ ଉତ୍ତର ଦେଲି ।

ଝିଅଟାର ସ୍ମୃତିଶକ୍ତି ସମ୍ଭବତଃ ମରଜୁଆନା ଆଉ ଚରସର ଧୂଆଁ ପିଇ ପିଇ ଖୁବ୍ ଦୁର୍ବଳ ହୋଇଯାଇଛି । ସେ ମୋ ଉତ୍ତରର ତାତ୍ପର୍ଯ୍ୟ ବୁଝି ପାରିଲା ନାହିଁ ।

ମୁଁ ତା'ର ମୁମୂର୍ଷୁ ସ୍ମୃତିଶକ୍ତିକୁ ଆଉ ଥରେ ଉଖାରି ଦେଇ କହିଲି— ଜନ୍ମ ହେଲା ବେଳେ କୌଣସି ନାମ ନେଇ ସେ ଚଢ଼େଇ ନିଶ୍ଚୟ ଜନ୍ମ ହୋଇନଥିଲା । ସେ ନୀଳ ଚଢ଼େଇକୁ ଅନ୍ୟ ରଙ୍ଗର ଚଢ଼େଇମାନଙ୍କଠାରୁ ଅଲଗା କରି ଚିହ୍ନାଇ ଦେବା ପାଇଁ କେହି ହୁଏତ କିଛି ଗୋଟାଏ ନାମ ଦେଇଛି । ସେ ନାମରେ ଅଛି କ'ଣ ? ଯେକୌଣସି ନାମରେ ତମେ ତାକୁ ଡାକି ପାର । ନାମ ତ ମାତ୍ର ଏକ ଚିହ୍ନ ।

ଏଥର ମୋ କଥାର ରହସ୍ୟ ଝିଅଟି ବୁଝିପାରିଲା । ତା'ର ଗୋରା ଗାଲରେ ହସର ଭାଙ୍ଗ ପଡ଼ିଗଲା । ମୁହଁର କଠିନ ମାଂସପେଶୀ କୋମଳ ହୋଇଗଲା । ସେ ମୋ ହାତକୁ ଝିଙ୍କି ନେଇ ତା ପାଖରେ ଜୋର୍ କରି ବସାଇଦେଇ କହିଲା— ଆପଣ ଖୁବ୍ ଚାଲାକ୍ । ନା ? ମୋର କଥା ମତେ ହିଁ ଫେରାଇଦେଲେ ।

ହିପ୍ପିଣୀ ପାଖରେ ବସିପଡ଼ି ଲକ୍ଷ୍ୟକଲି ତା କୋଳରେ ଗୋଟାଏ ଫେନି ବୋତଲ । ବୋଧହୁଏ ମୋ ସହିତ ଦେଖାହେବା ଆଗରୁ ଗୋଆନିଜ୍ ପାନୀୟରୁ ଅର୍ଦ୍ଧେକ ସେ ନିଃଶେଷ କରିଦେଇଛି । ବାର୍ କିମ୍ବା ରେଷ୍ଟୋରାଁରେ ବସି ଗ୍ଲାସ୍‌ରେ ଢାଳି ପିଇବା ଅପେକ୍ଷା ସମୁଦ୍ର କୂଳରେ ଚକ୍‌କର କାଟୁଥିବା ସାମୁଦ୍ରିକ ପକ୍ଷୀଙ୍କୁ ଚାହିଁ ମଦ୍ୟପାନରେ ହୁଏତ ଅତିରିକ୍ତ କିଛି ଆକର୍ଷଣ ଅଛି ।

ତା'ର କୋଳରେ ଶୋଇଥିବା ବୋତଲ ଉପରେ ମୋର ଦୃଷ୍ଟି ନିବଦ୍ଧ ହୋଇଥିବା ଲକ୍ଷ୍ୟ କରି ସେ କହିଲା— ଦୁଃଖିତ । ବୋତଲ ଅଇଣ୍ଠା କରିଦେଇଛି । ଚଳିବ ? ଖୁବ୍ ଭଲ ଜିନିଷ । କୋକାନଟ୍ ନୁହେଁ କାଜୁବାଦାମ୍‌ର ମଦ୍ୟ... ଫେନି ! ଇଣ୍ଡିଆରେ ଅନ୍ୟ କେଉଁଠି ମିଳେନା ।

ମୁଁ ମନାକଲି ।

: ସକାଳୁ ସକାଳୁ ମଦ ପିଇବାର ତାଡ଼ନା ନାହିଁ । ଆବଶ୍ୟକତା ମଧ୍ୟ ନାହିଁ । ତମର ନିଶା ହୋଇଛି ?

ମୋ ପ୍ରଶ୍ନର ଉତ୍ତର ଦେବା ପାଇଁ ଓଠରେ ଏକ ବିକୃତ ଭଙ୍ଗୀ କରି ସେ କହିଲା— ଫୁଃ...

ତା'ପରେ ତା'ର ଦୁଇ ଆଖି ଏକ ଦାର୍ଶନିକ ଉଦାସୀନତାରେ ସୁନୀଳ ହୋଇଗଲା ।

ସେ କହିଲା— ଜାଣ, ଏଗାର ବର୍ଷ ବୟସରେ ମୁଁ ପ୍ରଥମେ ମରଜୁଆନା ଟାଣିଥିଲି । ପ୍ରଥମ ନିଶାର ଉତ୍ତେଜନା ମୋର ଏଗାର ବର୍ଷର କିଶୋରୀ ଦେହର ସ୍ନାୟୁଗ୍ରନ୍ଥିକୁ ସତେଜ କରିଦେଇଥିଲା । ତା'ପରେ ମରଜୁଆନା, ଚରସ, ଗଂଜା, ଆଫେନ୍, ଏଲ.ଏସ୍.ଡି. ଆଉ ଶେଷରେ ହେରୋଇନ୍ ! ବଞ୍ଚିବାର ଅର୍ଥ ହେଉଛି ଦେହ ଓ ମନକୁ ସତେଜ ଆଉ ଉତ୍ତେଜିତ

କରି ରଖିବା । ନା ? କିନ୍ତୁ ଆଜିକାଲି ମୋ ସ୍ନାୟୁ ସବୁ ସହଜରେ ଉତ୍ତେଜିତ ହୁଅନ୍ତି ନାହିଁ । ଲାସ୍‌ଏଞ୍ଜେଲ୍‌ର ସୁରକ୍ଷିତ ଆଶ୍ରୟସ୍ଥଳ ଛାଡ଼ି ଦେହ ମନକୁ ଉତ୍ତେଜିତ କରି ରଖିବାର ନିଶାରେ ମୁଁ ୟୁରୋପ, ଏସିଆ ବିଭିନ୍ନ ଅଞ୍ଚଳ ଘୂରିବୁଲୁଛି । କିନ୍ତୁ କାହିଁ ଉତ୍ତେଜନା ? କାହିଁ ମୁକ୍ତି ?

ଶେଷ ଆଡ଼କୁ ତା'ର କଣ୍ଠସ୍ୱର ଏକ ବ୍ୟାକୁଳ ଜିଜ୍ଞାସାରେ ଶିହରିଉଠିଲା ।

ମୁଁ କହିଲି— ତାହାହେଲେ ଫେନି ମଦର ବୋତଲ କାହିଁକି ଧରି ବସିଛ ? ଉତ୍ତେଜନାକୁ ଧରିରଖିବାର ଶକ୍ତି ଦେହର ସ୍ନାୟୁଗ୍ରନ୍ଥି ଯେତେବେଳେ ହରାଇ ବସିଛି, ଦେହ ମନକୁ କିଛି ଦିନ ବିଶ୍ରାମ ଦେବା ଦରକାର ।

ଶିଶୁ ସନ୍ତାନକୁ ଗେହ୍ଲା କଲାଭଳି ଫେନି ବୋତଲକୁ ଛାତିରେ ଜାକି ଆଦର କରୁ କରୁ ସେ କହିଲା— ବୋତଲ ଭଳି କେହି ବନ୍ଧୁ ନାହିଁ । ଗୋଟାଏ ସିପ୍ ନେବେ ? ଖୁବ୍ ସତେଜ ଲାଗିବ ।

ମୁଁ ବ୍ୟସ୍ତ ହେଲି । ଟୁରିଷ୍ଟ ବସ୍ କଥା ମନେପଡ଼ିଲା । ସତର ଟଙ୍କାର ଟିକେଟ ଛାତି ପକେଟରୁ ଉଙ୍କିମାରୁଥିଲା । ମୋର ଆଜି ଅନେକ ଦର୍ଶନୀୟ ସ୍ଥାନ ଦେଖିବାର କଥା !

କିନ୍ତୁ ଏତେବେଳଯାଏ କଅଣ ଆଉ ଟୁରିଷ୍ଟ ବସ୍ ଅପେକ୍ଷା କରିଥିବ ? ପ୍ରାୟ ଅଧଘଣ୍ଟାଏ ସମୟ ଅତୀତ ହୋଇଗଲାଣି । ବସ୍ ଏତେବେଳେ ଆଲ୍‌ଟିନୋ ହିଲ୍ ପାଖରେ ପହଞ୍ଚିବା କଥା ।

ମୋ ମନର ଉଦ୍‌ବେଗ ଆଉ ଅସ୍ଥିରତା ଲକ୍ଷ୍ୟ କରି ହିପ୍‌ପିଣୀ ମୃଦୁ ହସି କହିଲା— ଗୋଟିଏ ବସ୍ ଚାଲିଗଲେ ବି ଆଉ ଗୋଟିଏ ବସ୍ କାଲି ମିଳିଯିବ । କିନ୍ତୁ ଆଜିର ଏଇ ମୁହୂର୍ତ୍ତ କାଲି ଆଉ ଫେରି ଆସିବ ନାହିଁ । ମ୍ୟାନ୍ ! ପ୍ରତିଟି ମୁହୂର୍ତ୍ତକୁ ଉପଭୋଗ କରିବା ହେଉଛି ଜୀବନର ଧର୍ମ । ପ୍ଲିଜ୍ ବି ସିଟେଡ୍ ! ଉଚ୍ଛିଷ୍ଟ ହେଲେ ମଧ୍ୟ ଫେନିର ସ୍ୱାଦ ତିଳେହେଲେ କମିନାହିଁ । ଚାଖି କରି ଦେଖନ୍ତୁ ।

ଫେନି ! ଫେନି !

ଗୋଆର କଥିତ କୋଙ୍କନୀ ଭାଷାରେ ଫେନି ବା ଫେଣ ଶବ୍ଦରୁ ଫେନି ଶବ୍ଦର ଉତ୍ପତ୍ତି । ଏଇ ଫେନାୟିତ ମଦ୍ୟ ପ୍ରତି ଆସକ୍ତି ପ୍ରତି ଗୋଆ ଅଧିବାସୀର ରକ୍ତରେ ମିଶି ରହିଛି ।

ଫେନି ଇଜ୍ ଟୁ ଦି ଗୋଆନ୍ ଲାଇଫ୍ ହ୍ୱାଟ୍ ଦ୍ୟ ସ୍କାଇ ଇଜ ଟୁ ଏ ବାର୍ଡ !

ନା, ଫେନି ମଦ୍ୟ ପାନ ନକଲେ ଯେ ଜୀବନର ଏଇ ମୁହୂର୍ତ୍ତକୁ ଉପଭୋଗ କରିହେବ ନାହିଁ, ସେକଥା ମୁଁ ବିଶ୍ୱାସ କରି ପାରିନଥିଲି । ହିପ୍‌ପିଣୀକୁ ତା'ର ମଦ୍ୟ–ପ୍ରୀତି ପାଇଁ ଧନ୍ୟବାଦ ଜଣାଇ ମୁଁ ପକେଟରୁ ଟୁରିଷ୍ଟ ବସ ଟିକେଟ କାଢ଼ି ଟିକି ଟିକି କରି ଚିରିଦେଲି । ପବନରେ ସମୁଦ୍ର ଆଡ଼କୁ ଉଡ଼ିଯାଉଥିବା ସେ ଚିରା ଟିକେଟର ଖଣ୍ଡିତାଂଶକୁ ଲକ୍ଷ୍ୟକରି ହିପ୍‌ପିଣୀ ମନ୍ତବ୍ୟ କଲା— ମୋ ପାଇଁ ଆପଣଙ୍କର ଅକାରଣରେ ଏତେଗୁଡ଼ାଏ ଟଙ୍କାର ଟିକେଟ ନଷ୍ଟ ହେଲା ଅଥଚ ମତେ ଯେଉଁ ଚାଳିଶ ଟଙ୍କା ଧାରଦେଇଥିଲେ ସେ ଟଙ୍କା ମଧ୍ୟ ଏପର୍ଯ୍ୟନ୍ତ ଫେରି ପାଇଲେ ନାହିଁ !

ଝିଅଟି ଯେ ଆଉ କେବେ ଧାର ନେଇଥିବା ସେ ଚାଳିଶ ଟଙ୍କା କଥା ମୁହଁରେ ଧରିବ ଏକଥା ମୁଁ ଆଶା କରିନଥିଲି । ଅପ୍ରତ୍ୟାଶିତ ଭାବରେ ତା ମୁହଁରୁ ସେ ଟଙ୍କା କଥା ଶୁଣି ମୁଁ ଖୁବ୍ ରୋମାଞ୍ଚିତ ହେଲି ।

ତା ପାଖରେ ସାମ୍ନାସାମ୍ନି ତା ମୁହଁକୁ ଚାହିଁ ବସିପଡ଼ି କହିଲି— ମୋ ଫେରିବା ପାଇଁ ଅପେକ୍ଷା ନକରି ହଠାତ୍ ସକାଳୁ ସକାଳୁ ଉଠି ଚାଲିଆସିଲ କାହିଁକି ? ମୁଁ କିନ୍ତୁ ଆଶା କରୁଥିଲି ମୋର ଫେରିବା ସାମାନ୍ୟ ବିଳମ୍ବ ହୋଇଥିଲେ ମଧ୍ୟ ତମେ ମୋ ପାଇଁ ଅପେକ୍ଷା କରିଥିବ ।

ହିପ୍‌ପିଣୀ ମୋ ଆଖିରେ ଆଖି ରଖି କହିଲା— ଆପଣ ଯେ ଆଜି ଫେରିବେ ଆପଣଙ୍କ ଫେରିବା ବିଳମ୍ବ ଦେଖି ମୁଁ ବିଶ୍ୱାସ କରି ନଥିଲି । ଆପଣଙ୍କ ବାନ୍ଧବୀ ବେଶ୍ ସୁନ୍ଦରୀ । ସୁନ୍ଦରୀ ବାନ୍ଧବୀର ସଖ୍ୟ ଛାଡ଼ି ଆପଣ ଯେ ଶୂନ୍ୟ ଟୁରିଷ୍ଟ ଲଜ୍‌କୁ ଫେରିଛନ୍ତି, ଏପର୍ଯ୍ୟନ୍ତ ମଧ୍ୟ ମୁଁ ବିଶ୍ୱାସ କରିନଥିଲି ।

: ମୋର ବସ୍ ସହଯାତ୍ରିଣୀ ଯେ ମୋର ପତ୍ନୀ ନୁହନ୍ତି, ବାନ୍ଧବୀ; ଏକଥା ଜାଣିପାରିଛ ଦେଖି ମୁଁ ଖୁବ୍ ଖୁସିହୋଇଛି । ଏକଥା ନିଶ୍ଚୟ ବୁଝିପାରିଛ ମୋର ବାନ୍ଧବୀ ବିବାହିତା ଏବଂ ତାର ସ୍ୱାମୀଙ୍କ ପାଖରେ ରହୁଛି । ମୁଁ ତା ପାଖରେ ଅଟକି ରହିବି ବୋଲି ତମର ହଠାତ୍ କାହିଁକି ଧାରଣା ହେଲା ? ତମକୁ ସେ ସୁନ୍ଦରୀ ଦେଖାଯାଇପାରେ; ମୋ ଆଖିକୁ ସେ ସୁନ୍ଦରୀ ଦେଖାଯିବ ବୋଲି ଭାବୁଛ କାହିଁକି ?— ମୁଁ କୌତୂହଳରେ ପ୍ରଶ୍ନ କଲି ।

ନିଜ ମୁହଁରେ ଏକ ବାଳିକା–ସୁଲଭ ଚପଳ ହସର ଢେଉ ଖେଳାଇ ସେ କହିଲା— ପୃଥିବୀରେ ସବୁ ପୁରୁଷଙ୍କ ଆଖିରେ ନିଜ ସ୍ତ୍ରୀ ଅପେକ୍ଷା ଅନ୍ୟର ସ୍ତ୍ରୀ ବେଶୀ ସୁନ୍ଦରୀ ଦେଖାଯାଆନ୍ତି । ସେଥିପାଇଁ ସେମାନେ ନିଜ ଘର ଭାଙ୍ଗଦିଅନ୍ତି, ଅନ୍ୟର ସଂସାର ମଧ୍ୟ ଉଚ୍ଛନ୍ନ ନ କରି ଛାଡ଼ନ୍ତି ନାଇଁ । ମିଛ କହୁଛି ?

ସଂସାର ବୈରାଗୀ ସନ୍ନ୍ୟାସିନୀ ହିପ୍‌ପିଣୀ ମୁହଁରୁ ସେ ସାଂସାରିକ ଦର୍ଶନ ଶୁଣି ମୁଁ ଚମକିଉଠିଲି । ଝିଅଟା ମତେ କଅଣ ମନେକରିଛି ?

: ତମେ କିନ୍ତୁ ଭୁଲ ବୁଝିଛ । ଝିଅଟି ମୋର ବାନ୍ଧବୀ, କିନ୍ତୁ ପ୍ରେମିକା ନୁହେଁ । —ମୁଁ କ୍ଷୀଣ କଣ୍ଠରେ ପ୍ରତିବାଦ କଲି ।

ସେ କିନ୍ତୁ ମୋ ପ୍ରତିବାଦକୁ ବିଶ୍ୱାସ କଲାନାହିଁ ।

କହିଲା— ମଧ୍ୟରାତ୍ରିରେ ସାରା ବସ୍‌ରେ ଯାତ୍ରୀମାନେ ଯେତେବେଳେ ଢୁଳାଉଥିଲେ, ଆପଣ ବେଶ୍ ଆରାମରେ ସିଟ୍‌କୁ ଆଉଜି ଶୋଇଯାଇଥିଲେ । ଆଉ ସେ ଝିଅଟି ଆପଣଙ୍କ ମୁହଁ ଉପରକୁ ଝୁଙ୍କିପଡ଼ିଥିବା କେତୋଟି ଅଲରା କେଶକୁ ସଜାଡ଼ିଦେଉଥିଲା । ଏ ପାଖ ସେ ପାଖ ନଡ଼ନଡ଼ ହେଉଥିବା ଆପଣଙ୍କ ମୁଣ୍ଡକୁ ଖୁବ୍ ସାବଧାନତାର ସହିତ ନିଜ କାନ୍ଧ ଉପରକୁ ଆଉଜାଇ ଆଣୁଥିଲା । ନିଦ୍ରିତ ଅବସ୍ଥାରେ ଆପଣ ଶିଶୁଟିଏ ଭଳି ସରଳ ଦେଖାଯାଉଥିଲେ । ଆଉ ଖୁବ୍ ସ୍ନେହମୟୀ ପ୍ରଣୟିନୀ ଭଳି ଖୁବ୍ ନିଷ୍ଠାର ସହ ଆପଣଙ୍କ ନିଦ୍ରାରେ ଯେପରି ବ୍ୟାଘାତ ନଘଟେ ସେଥିପାଇଁ ଝିଅଟି ଯତ୍ନ କରୁଥିଲା । ତା'ର ଯତ୍ନ ନେବାର ଭଙ୍ଗୀ, ସ୍ନେହ କରିବାର

ଶୈଳୀ ସତରେ ଭାରି ଆନ୍ତରିକ ଆଉ ସୁନ୍ଦର । ମୁଁ ବାରମ୍ବାର ପଛକୁ ମୁହଁ ବୁଲାଇ ଲର୍ଡକୁ ଦେଖିବା ବାହାନାରେ ତା'ର ସେ ସ୍ନେହ, ଯତ୍ନ କରୁଥିବାର ଭଙ୍ଗୀ ଦେଖି ଈର୍ଷାରେ ଜଳୁଥିଲି । ବିଶ୍ୱାସକରନ୍ତୁ, କୌଣସି ନାରୀକୁ ଈର୍ଷା କରିବା ଏଇ ମୋର ପ୍ରଥମ । ଗ୍ରାସ୍‌ର ନିଶା ଛାଡ଼ିଯାଇଥିଲା । ଈର୍ଷାର ବିଷ ଗ୍ରାସ୍‌ର ବିଷାକ୍ତ ନିଶାକୁ ମଧ୍ୟ ପରାସ୍ତ କରିଦେଇପାରେ, ସେ ଅନୁଭୂତି ମଧ୍ୟ ମୋର ନୂତନ ।

ଅନର୍ଗଳ ଇଂରାଜୀ ଭାଷାରେ ନିଜ ମନୋଭାବ ବ୍ୟକ୍ତ କରିସାରି ଅଣନିଃଶ୍ୱାସୀ ହୋଇଗଲା ହିପ୍‌ପିଣୀ, କଣ୍ଠ ତା'ର ବୋଧହୁଏ ଶୁଖିଆସିଲା । ଫେନି ବୋତଲରୁ ଢୋକେ ମଦ୍ୟ ପାନ କରି ନିଜ ଶୁଖିଲା କଣ୍ଠନଳୀକୁ ସେ ଭିଜାଇନେଲା ।

ମୋର କୌତୂହଳ ସେତେବେଳକୁ ବିସ୍ମୟରେ ପରିଣତ ହୋଇସାରିଥିଲା । ଲିପି ପ୍ରକୃତରେ ସେଦିନ ମତେ ଆରାମରେ ଶୋଇବାକୁ ଦେବାପାଇଁ ଆଦର ଯତ୍ନ କରୁଥିଲା କି ନାହିଁ ସେକଥା ହିପ୍‌ପିଣୀ ମୁହଁରୁ ଶୁଣିନଥିଲେ କୌଣସି ଦିନ ଜାଣି ପାରି ନଥାନ୍ତି ।

: କୌଣସି ନିଦ୍ରିତ ସହଯାତ୍ରୀକୁ ନିଶ୍ଚିନ୍ତ ନିଦରେ ଶୋଇବାକୁ ଦେବାରେ ସହାୟତା କରିବା ସହଯାତ୍ରିଣୀ ନାରୀର ଧର୍ମ । ଏଥିରେ ପ୍ରଣୟିନୀସୁଲଭ ପୂର୍ବରାଗର ଚିହ୍ନ କାହିଁ ? —ମୁଁ ପ୍ରଶ୍ନ କଲି ।

: ଚିହ୍ନ ଥିଲା ସେ ଝିଅର ଆଖିରେ । ମୋ ଆଖିକୁ ଫାଙ୍କି ଦେବା ସହଜ ନୁହେଁ । ମାଇଁ ଡିଅର୍ ! ସେ ଝିଅ ଯେ ଆପଣଙ୍କୁ ଖୁବ୍ ଭଲପାଏ, ଏକଥା ଲୁଚାଇବା କଅଣ ଦରକାର ? ଏଭଳି ଗଭୀର ନିଷ୍ପାପର ପ୍ରେମ ଆଜି କେବଳ ଇଣ୍ଡିଆରେ ସମ୍ଭବ ! ଉତ୍କଟ ଦାରିଦ୍ର୍ୟ ଭିତରେ ସେଥିପାଇଁ ଏ ଦେଶର ଲୋକେ ୟୁରୋପ, ଆମେରିକାର ଲୋକଙ୍କଠାରୁ ଅଧିକ ଶାନ୍ତିରେ ଅଛନ୍ତି । ଥ୍ରି ଚିଆର୍ସ ଫର୍ ଇଣ୍ଡିୟାନ୍ ଉଇମେନ୍ ! —ସ୍ଲୋଗାନ୍ ଦେବାର ଭଙ୍ଗୀରେ ସେ ଶେଷ ଇଂରେଜୀ ଶବ୍ଦ କେତୋଟି ଈଷତ୍ ଉଚ୍ଚକଣ୍ଠରେ ଉଚ୍ଚାରଣ କଲା ।

ଏ ମାର୍କିନ୍ ଝିଅଟି ତାହାହେଲେ ଲିପିକୁ ଈର୍ଷା କରୁଥିଲା ତା ଭଲ ପାଇବାର ଆନ୍ତରିକତା ପାଇଁ; ଯାହା ଆଜି ୟୁରୋପ–ଆମେରିକା ଭଳି ଧନତାନ୍ତ୍ରିକ ଦେଶର ପୁଅଝିଅଙ୍କ ପ୍ରେମରୁ ବାଦ୍ ପଡ଼ିଯାଇଛି ! ସେମାନଙ୍କ ପ୍ରେମ ଜୈବିକ, ଆନ୍ତରିକ ନୁହେଁ !

କିନ୍ତୁ ଲିପି କଅଣ ସତରେ ତା'ର ମନ, ହୃଦୟ ଦେଇ ମତେ ଭଲପାଏ ? କାହିଁକି ? କେତେଦିନ ଅବା ତା ସହିତ ମୋର ପରିଚୟ ! କଅଣ ତା ସହିତ ମୋର ସମ୍ପର୍କ ? ସ୍ୱାମୀ, ସନ୍ତାନ ନେଇ ତା'ର ପରିପୂର୍ଣ୍ଣ ସଂସାର । ମୋ ଭଳି ଏକ ସୃଷ୍ଟିଛଡ଼ା ଯାଯାବରକୁ କେଉଁ ଦୁଃଖରେ ସେ ନିଜର ହୃଦୟ ଅର୍ପଣ କରିବାକୁ ଯିବ ?

ମାର୍କିନ୍ ଝିଅଟି ସମ୍ଭବତଃ ତା ନିଜ କଳ୍ପନାର ରଙ୍ଗିନ୍ ଚଷମାରେ ଲିପିର ସାଧାରଣ ସୌଜନ୍ୟକୁ ଅସାଧାରଣ ପ୍ରେମ ବୋଲି ମନେକରୁଛି ! ମୁଁ ଦେଖିଛି, ଚରସ ଭର୍ତ୍ତି ସିଗାରେଟ ଖାଇ ସେଦିନ ରାତିରେ ସେ କିପରି ଢୁଳୁ ଢୁଳୁ ଆଖିରେ ରାସ୍ତା କଡ଼ର ପଥରଖଣ୍ଡ ଉପରେ ବସିଥିଲା ।

ଅକାରଣରେ ଏ ନିଶାଖୋର ହିପ୍‌ପିଣୀ ପାଖରେ ମୁଁ ଅନେକ ସମୟ ଅପବ୍ୟୟ କରିସାରିଲିଣି । ସତର ଟଙ୍କାର ଟିକେଟ କିଣି ଟୁରିଷ୍ଟ ବସ୍‌ରେ ଉଠିପାରିନି । ଏଣୁତେଣୁ ଗପ କରୁ କରୁ ସକାଳର ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଆସିଲେଣି !

ମୁଁ ହିପ୍‌ପିଣୀ ପାଖରୁ ବିଦାୟ ମାଗିଲି ।

: ମତେ ଲଜ୍‌କୁ ଫେରିବାକୁ ହେବ । ଗୋଆ ଦର୍ଶନ ତ ହେଲାନାଇଁ; ଅନ୍ତତଃ କିଛି ଗୋଆନିଜ୍ ଖାଦ୍ୟ ଖାଇ ବିଶ୍ରାମ କରାଯାଉ ।

ମୋ କଥା ଶୁଣି ଝିଅଟି ଚମକିଉଠିଲା ।

କହିଲା— ସେ ହୋଟେଲ ରୁମ୍‌କୁ ଫେରିଯିବେ ? ପ୍ଲିଜ୍, ସେଠାକୁ ଯାଆନ୍ତୁ ନାଇଁ । ସେ ନିର୍ଜନ କୋଠରି ଭାରି ନିଷ୍ଠୁର । କାଲି ରାତିରେ ଆପଣଙ୍କ ସ୍ମୃତିକି ସାଥିକରି ସେ କୋଠରିରେ ମୁଁ ଶୋଇବାକୁ ଚେଷ୍ଟା କରିଥିଲି । ସେ ଝିଅଟି ଭଳି ଆପଣଙ୍କ ମୁହଁ ଉପରେ ଝୁଙ୍କି ପଡ଼ିଥିବା ଅଲରା କେଶକୁ ସଜାଡ଼ି ଦେବାକୁ ଚେଷ୍ଟା କରୁଥିଲି । କିନ୍ତୁ ପାରିଲି ନାହିଁ । ଭୟଙ୍କର ଏକ ଦୁଃସ୍ୱପ୍ନ ମତେ ଚମକାଇ ଦେଲା । ଅନ୍ଧାରରେ ମଧ୍ୟ ସେ ଦୁଃସ୍ୱପ୍ନର ମୁହଁ ଦେଖି ମୁଁ ଚମକିଉଠିଲି । ମୋର ତଣ୍ଟି ଶୁଖିଗଲା, କିନ୍ତୁ ଟୋପାଏ ହେଲେ ମଦ୍ୟ ସେ ଏତେବଡ଼ କୋଠରିରେ କେଉଁଠି ନଥିଲା । ସିଗାରେଟ ନାହିଁ । ଚିଲମ ଶୂନ୍ୟ । ସ୍ନାୟୁଗ୍ରନ୍ଥି ସବୁ ଶିଥିଳ । ସେ ଭୟଙ୍କର ଦୁଃସ୍ୱପ୍ନ ସହିତ ଲଢ଼େଇ କରିବା ପାଇଁ ମନରେ ଯେଉଁ ଯୁଦ୍ଧକାଳୀନ ଉତ୍ତେଜନା ଲୋଡ଼ା, ସେ ଉତ୍ତେଜନାର ଅଭାବରେ ମୁଁ ସଂପୂର୍ଣ୍ଣ ଭାଙ୍ଗିପଡ଼ିଲି । ସେ ଦୁଃସ୍ୱପ୍ନର ପାଦତଳେ ଆଣ୍ଠୁମାଡ଼ି ବସି କହିଲି, ମୋର ଯୁଦ୍ଧକୁ ଘୃଣା, ପ୍ରେମ କରିବାକୁ ମନ । ମେକ୍ ଲଭ୍, ନୋ ୱାର୍ !

ସତକୁ ସତ ସେ ହିପ୍‌ପିଣୀ ସମୁଦ୍ର ବାଲି ଉପରେ ଆଣ୍ଠୁମାଡ଼ି ବସି, ନୟନ ମୁଦ୍ରିତ କରି ଶ୍ଳୋକ ଉଚ୍ଚାରଣ କରୁଥିବା ଭଳି କହିଲା— Make Love, No war.

ଫେନିର ନିଶା ତା'ର ରକ୍ତକୋଷରେ ଫେନାୟିତ ହୋଇଉଠିଛି । ସେ ହରାଇ ବସିଛି ତାର ମାନସିକ ଭାରସାମ୍ୟ । ତାକୁ ଏଭଳି ଅବସ୍ଥାରେ ଏକାକିନୀ ଛାଡ଼ି ଦେଇ ନିଜେ ଟୁରିଷ୍ଟ ଲଜ୍‌କୁ ଫେରିଯିବା କଅଣ ପୁରୁଷଜନୋଚିତ କାର୍ଯ୍ୟ ହେବ ?

କଇଁଛର ବେକ ଭଳି ଏକ ଦଂଶିତ ବିବେକ ମୋ ମନର କଠିନ ଖୋଳପା ଭିତରୁ ହଠାତ୍ ବାହାରିଆସିଲା । ମୁଁ ଆଉ ପାଦେହେଲେ ଆଗେଇ ପାରିଲି ନାହିଁ । ମୋର ମନେହେଲା, ମୋର ଗୋଆ ଦର୍ଶନ ଏଇ ହିପ୍‌ପିଣୀର ମାତଲାମି ସହିତ ନିୟତି ଯେପରି କାଣିକାଣିଛନ୍ଦି ଦେଇଛି ।



## ଆଗ୍ନେୟଗିରିରେ ବଣଭୋଜି



ପ୍ରତି ନାରୀ ଗୋଟିଏ ଗୋଟିଏ ଅପ୍ରକାଶିତ ଉପନ୍ୟାସ । କେହି ନଭେଲା, କେହି ନଭେଲ୍ !

ସେ ହିପ୍‌ପିଣୀର କଥାରେ, ଚାହାଣିରେ, ଚାଲିବାର ଭଙ୍ଗୀରେ ଗଳ୍ପର ସୁଗନ୍ଧ ଭରି ରହିଥିଲା । ବେଳେ ବେଳେ ସେଇ ସୁରଭି ମୋ ଘ୍ରାଣେନ୍ଦ୍ରିୟକୁ ଉତ୍ତେଜିତ କରିଦେଉଥିଲା । ଭାରି ଇଚ୍ଛାହେଉଥିଲା ତାକୁ ପଚାରିବ— ମିସ୍ ଆମେରିକା ! ଜୀବନର କେଉଁ ପରାଜୟକୁ ଗୋପନ କରିବା ଲାଗି, କେଉଁ ଗ୍ଲାନିକୁ ଭୁଲିବାପାଇଁ ତମେ ଭାରତବର୍ଷର ବିଲ ବନ ପାହାଡ଼ ପର୍ବତ ନଗର ଗ୍ରାମ ଘୂରିବୁଲୁଛ ? ତମ ଜୀବନର କେଉଁ ଦୁଃଖ ହାତରେ ଚିଲମ, ଚରସ୍, ଉଗ୍ରି ସିଗାରେଟ୍, ଏଲ୍. ଏସ୍. ଡି., ମର୍‌ଫିନ୍ ଆଉ ହେରୋଇନ୍ ଇଂଜେକସନର ସିରିଂଜ୍ ଧରାଇଦେଇଛି ? କେଉଁ ସୁଖର ଅନ୍ୱେଷଣରେ ଐଶ୍ୱର୍ଯ୍ୟଶାଳିନୀ ଆମେରିକାର ଉଷ୍ମକୋଳ ଛାଡ଼ି ତମେ ଆଜି ଏକାକିନୀ ନିଃସହାୟ ଭାବରେ ଗୋଆର ସମୁଦ୍ର ବେଳାରେ ଫେନି ବୋତଲ ଧରି ଉଦାସ ଦୃଷ୍ଟିରେ ଆରବ ସାଗରକୁ ଚାହିଁ ଗୋଟାକୁ ଗୋଟା ଦୀର୍ଘଶ୍ୱାସ ତ୍ୟାଗକରୁଛ ?

କିନ୍ତୁ ଏସବୁ କଥା ମୋ ତଣ୍ଟି ଆରପଟେ ଅଟକିଯାଏ । ଇଚ୍ଛା କରି ଏସବୁ ପ୍ରଶ୍ନ ତାକୁ ମୁଁ ପଚାରେ ନାହିଁ । କାରଣ ମୁଁ ଗୋଆର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିବାକୁ ଆସିଛି, ଜଣେ ଆମେରିକା ହିପ୍‌ପୀ ତରୁଣୀର ବ୍ୟର୍ଥ ଜୀବନ କାହାଣୀ ଶୁଣିବାକୁ ନୁହେଁ ।

ମୁଁ ତାକୁ ଏଡ଼ାଇ ଯିବାକୁ ଚେଷ୍ଟା କରିଥିଲି ।

କିନ୍ତୁ ପାରିଲି ନାହିଁ । ହିପ୍‌ପିଣୀର ହୃଦୟ ଅଭ୍ୟନ୍ତରରେ ଅନେକ ଦିନୁ ଚାପା ପଡ଼ି ଫସିଲ୍ ହୋଇଯିବାକୁ ବସିଥିବା ଗୋଟିଏ ଗଳ୍ପର ଆଭାସ ମୋ ଲେଖକ ମନ ପାଖରେ ଜଳନ୍ତା ସୁବାସିତ ଧୂପକାଠି ଭଳି ମହକିଉଠିଲା । ମୋ କାନ୍ଧରେ ଭରା ଦେଇ ଟାକ୍‌ସିରୁ ଓହ୍ଲାଇ ମୋ ଲଜ୍‌କୁ ଆସୁଥିବାବେଳେ ସେ ହଠାତ୍ ଠିଆହୋଇ ଯାଇ କହିଲା—

: ୟାର୍ ! ମତେ କଅଣ ପୁଣି ସେଇ କୋଠରିକୁ ଫେରିଯିବାକୁ ହେବ ?

: ମୋ ସହିତ ମୋ ରୁମ୍‌କୁ ଯିବାରେ କଅଣ ତମର ଆପତ୍ତି ଅଛି ? —ମୁଁ ତା'ର ପ୍ରଶ୍ନ ଶୁଣି ଟିକିଏ ଅପ୍ରତିଭ ହୋଇ ଓଲଟା ପ୍ରଶ୍ନକଲି ।

ସେ ମୋ ମୁହଁକୁ ଅନେଇଲା । ଏଇ ପ୍ରଥମ ତା ଆଖିରେ ମୁଁ ଅନୁରାଗର ଆମନ୍ତ୍ରଣ ଲକ୍ଷ୍ୟକଲି । ଅପରିଚିତା କୌଣସି ସୁଦୂରର ବିଦେଶିନୀ ନୁହେଁ; ଖୁବ୍ ଆପଣାର ଆତ୍ମୀୟା ଭଳି ଏକ କୋମଳ ଦୃଷ୍ଟିରେ ଚାହିଁ ସେ ମତେ କହିଲା— କାଲି ରାତିରେ ଆପଣଙ୍କ ସ୍ମୃତି ସହିତ ସୁଖରେ ଶୟନ କରିବି ବୋଲି ମନ ସ୍ଥିର କରି ସେ ରୁମ୍‌ର ଚାବି ରଖିଥିଲି । ଆଜିକାଲି କୌଣସି ସନ୍ତାନ ଉତ୍ପାଦନକ୍ଷମ ସମର୍ଥ ପୁରୁଷ ସହିତ ଶୟନ କରିବା ଅପେକ୍ଷା ତା'ର ସ୍ମୃତି ସହିତ ଶୟନ କଲେ ମୋର ସୁନିଦ୍ରା ହୁଏ । ବମ୍ବେରେ ଆସୁଥିବା ସେଇ ଝିଅର ଭୂମିକାରେ ନିଜକୁ ରଖି ଆପଣଙ୍କୁ ସାରା ରାତି ଆଦର କରିବି ବୋଲି ମନେ ମନେ ମୁଁ ନିଜକୁ ପ୍ରସ୍ତୁତ କରିଥିଲି; କିନ୍ତୁ ବିଛଣା ଧରିବା ମାତ୍ରେ ଆପଣଙ୍କ ବଦଳରେ ଜଣେ ଡେଡ୍ ଆମେରିକାନ୍ ହଠାତ୍ ମୋ ସ୍ମୃତିକୋଷରେ ପ୍ରବେଶ କରିଗଲା... ନା, ମିଛ କହୁନି; ଏ ଡେଡ୍ ଆମେରିକାନ୍... ଅନେକ ଦିନ ତଳେ ଭିଏତନାମ୍‌ର ରଣକ୍ଷେତ୍ରରେ ଯାହାର ମୃତ୍ୟୁ ଘଟିଛି... ଅଥବା ଯାହାର କୌଣସି ପତ୍ତା ମିଳୁନି— ଗୋଟାଏ ଜୀବନ୍ତ ବିଦେଶୀ ଗନ୍ଧର ଆଭାସ ବଉଳ ଫୁଲର ବାସ୍ନା ଭଳି ହଠାତ୍ ସେ ହିପ୍‌ପିଣୀ କଥା ଭିତରେ ମହକିଉଠିଲା ।

ମୋର ଗନ୍ଧ ଅନିସନ୍ଧିତ୍ସୁ ମନ ଉତ୍କକିତ ହୋଇଉଠିଲା ।

ମୁଁ ନିର୍ବୋଧଙ୍କ ଭଳି ପ୍ରଶ୍ନ କଲି— ସେ ଡେଡ୍ ଆମେରିକାନ୍ ସୈନିକ କଅଣ ତମର ପ୍ରେମିକ ?

: ହଁ, ମୋର ପ୍ରେମିକ ଏକ ମୃତ ମଣିଷ । ଆମେ ଏଭଳି ଏକ ସମୟ ମଧ୍ୟରେ ବାସକରୁଛୁ, ଯେତେବେଳେ ମଣିଷ ମଲା ପରେ ହିଁ ଆମେ ତାକୁ ପ୍ରେମ କରୁ । ସେ ବଞ୍ଚିଥିବାବେଳେ ଘୃଣା !— ଉତ୍ତର ଦେଇସାରି ଶୂନ୍ୟ, ଉଦାସ ଦୃଷ୍ଟିରେ ମତେ ଚାହିଁରହିଲା ।

ମୋର ମନେହେଲା ତା'ର ନିହତ–ପ୍ରେମିକର ସ୍ମୃତି ତା ସ୍ନାୟୁଗ୍ରନ୍ଥି ଉପରୁ ଫେନି ନିଶାର ପ୍ରଭାବ ଦୂର କରିଦେଇଛି । ମୋ କାନ୍ଧ ଉପରେ ତା ଦେହର ଚାପ ଅଧିକରୁ ଅଧିକ ହେଉଛି । ଉଷ୍ମ କୋମଳ ନାରୀ ଦେହର ସ୍ପର୍ଶ ମୋ ରକ୍ତରେ ନିଶା ଧରାଇଦେଉଛି ।

ରୁମ୍‌ରେ ପ୍ରବେଶ କଲା ପରେ ସେ କହିଲା— ଭାରି ଭୋକ । ଚାରି ପିସ୍ ସାଣ୍ଡଉଇଚ୍ ଆଉ ଦୁଇଟା ସିଝା ଅଣ୍ଡା ନିହାତି ଦରକାର ।

ମୁଁ ରୁମ୍ ବୟ୍‌କୁ ଡାକି ସାଣ୍ଡଉଇଚ୍ ଆଉ ଅଣ୍ଡା ପାଇଁ ଟଙ୍କା ଦେଲି ।

ସେ ମୋର ପର୍ସ ଖୋଲିବା ଲକ୍ଷ୍ୟ କରି କହିଲା— ଚାଳିଶ ଟଙ୍କା ଧାର୍ ଉପରେ ଆଉ କିଛି ଋଣ ଟଙ୍କା ଯୁକ୍ତହେଲା । ବିଶ୍ୱାସ କରନ୍ତୁ, ଏ ସବୁ ଟଙ୍କା ମୁଁ ଶୁଝିଦେବି । ପାଂକ୍ରିମ୍ ଆସି ଖବର ନେଇଥିଲି– ମୋର ସାଙ୍ଗମାନେ କେହି ଏ ପର୍ଯ୍ୟନ୍ତ ଏଠାକୁ ଆସିନାହାନ୍ତି । ଦିନେ ଦୁଇଦିନ ମଧ୍ୟରେ ଆସିଯିବେ । ନଆସିଲେ ମଧ୍ୟ ମୋର ରିଷ୍ଟୱାଚ୍ ବିକ୍ରି କରି ମୁଁ ଆପଣଙ୍କ ଟଙ୍କା ଶୁଝିଦେବି । ମୋ ପାଖରେ ଯାହା ଟଙ୍କା ଅଛି ଏଇ କେଇଦିନ ନିଶା ଖର୍ଚ୍ଚ ପାଇଁ ମଧ୍ୟ ତାହା ଯଥେଷ୍ଟ ନୁହେଁ; କିନ୍ତୁ ଟଙ୍କା ଠିକ୍ ମିଳିଯିବ । ବିଲିଭ୍ ମି !

ଅବିଶ୍ୱାସ କରିବାର କିଛି ମାନେ ହୁଏନା । ଲାଭ ମଧ ନାହିଁ । ମୁଁ ସେ ଚାଳିଶ ଟଙ୍କା ଧାର୍ କଥା ଭୁଲିଯାଇଛି ।

ମୁଁ ତା ମନ୍ତବ୍ୟର କୌଣସି ଉତ୍ତର ଦେଲିନାହିଁ । କାରଣ ସେତେବେଳେ ସେ ମୋ ପାଇଁ ଆଉ ଜଣେ ପଥଭ୍ରଷ୍ଟା, ବିଦେଶିନୀ ହୋଇ ରହିନଥିଲା; ସେ ମୋର ମନେହୋଇଥିଲା ଏକ ଅପ୍ରକାଶିତ ଉପନ୍ୟାସର ପାଣ୍ଡୁଲିପି !

: ତମର ତାହାହେଲେ ଏଠାରେ ସାଙ୍ଗ ହିପ୍ପିମାନେ ଅଛନ୍ତି । ସେମାନେ ବର୍ତ୍ତମାନ କେଉଁଠି ?

ମୋର ପ୍ରଶ୍ନ ଶୁଣି ସେ ଖଣ୍ଡେ ସାଣ୍ଡଉଇଚ୍ ବାମ ହାତରେ ଉଠାଇ ନେଇ ପାଟିରେ ଭର୍ତ୍ତିକରିଦେଲା । ଡାହାଣ ହାତ ଆଙ୍ଗୁଠି ଫାଙ୍କରେ ଜଳିଯାଉଥିଲା ଖଣ୍ଡେ ଚାରମିନାର୍ !

କିଛି ସମୟ ପରେ ।

: ସେମାନେ ହୁଏତ ଦିଲ୍ଲୀର ଦରିଆଗଂଜ୍‌ରେ କିମ୍ବା କାଠମାଣ୍ଡୁରେ । ସାତମାସ ତଳେ ପଲ୍ ସହିତ ମୋର ବମ୍ବେରେ ଦେଖାହୋଇଥିଲା । ମୁଁ ସେତେବେଳେ ଚିମ୍ବୁରର ଗୋଟିଏ କିନ୍‌ଡ଼ାରଗାରଟେନ୍ ସ୍କୁଲର ମାଷ୍ଟ୍ରାଣୀ । କାଠମାଣ୍ଡୁ ଯିବାପାଇଁ ମୋ ପାଖରୁ ସେ କିଛି ଟଙ୍କା ଧାର ନେବାକୁ ଆସିଥିଲା । କଥାଥିଲା ସେପ୍‌ଟେମ୍ବରରେ ପାଂଜିମ୍‌ରେ ତା ସହିତ ଦେଖାହେବ । ପଲ୍ ଖୁବ୍ ରକ୍ ମିଉଜିକ୍ ଗାଇପାରେ । ଦେଖିଲେ ଆପଣଙ୍କୁ ଭଲଲାଗିବ । ମୋ ଠାରୁ ବୟସରେ ଖୁବ୍ ସାନ । କେତେ ତା'ର ବୟସ ହେବ ? ଠିକ୍ ଜାଣେନା । ହୁଏତ ସାନ ନହୋଇପାରେ; କିନ୍ତୁ ତା ମୁହଁର କୋମଳ ସୌନ୍ଦର୍ଯ୍ୟ ଲକ୍ଷ୍ୟ କଲେ ମନେହେବ, ସେ ମାତ୍ର ଅଠର ବର୍ଷର ଯୁବକ ।

କଥା ଅଧା ରଖି ସେ ବାକି ସାଣ୍ଡଉଇଚ୍ ଆଉ ସିଝା ଅଣ୍ଡା ଦୁଇଟି ବେଶ୍ ମନୋଯୋଗ ଦେଇ ଚୋବାଇବାକୁ ଲାଗିଲା । ତା'ପରେ ପିନ୍ଧିଥିବା ଫ୍ରକ୍‌ରେ ମୁହଁ ପୋଛି ନେଇ ଆଉ ଖଣ୍ଡେ ସିଗାରେଟ୍ ଲଗାଇଲା । ଏ ସିଗାରେଟ୍ ଭିତରେ ନିଶ୍ଚୟ ଚରସ୍ କିମ୍ବା ଗ୍ରାସ୍ ଭର୍ତ୍ତି । ଉତ୍କଟ ଗନ୍ଧରେ ମୋ ନାସିକା କୁଞ୍ଚିତ ହୋଇଗଲା । ଅଧିକ ଦ୍ରୁତ ବାୟୁ ସଞ୍ଚାଳନ ପାଇଁ ମୁଁ ପଙ୍ଖାର ସ୍ପିଡ୍ ବଢ଼ାଇଦେଲି ।

: ପଲ୍ ତମର ବୟ୍ ଫ୍ରେଣ୍ଡ୍ । ନା ?

ମୋଉ ପ୍ରଶ୍ନ ଶୁଣି ଏକ ସୁସ୍ୱାଦୁ ହସର କ୍ଷୀଣରେଖା ତା ମୁହଁରେ ଫୁଟିଉଠିଲା । ଚାରିଖଣ୍ଡ ସାଣ୍ଡଉଇଚ୍ ଆଉ ଦୁଇଟା ସିଝା ଅଣ୍ଡା ଗର୍ଭସାତ୍ କରି ସାରିବା ପରେ ସେ ଅନେକ ପରିମାଣରେ ତୃପ୍ତ ଆଉ ପ୍ରକୃତିସ୍ଥ ହୋଇ ସାରିଥିଲା । ହସଟି ବେଶ୍ ଭଲ ମାନୁଥିଲା ତା'ର ମୁହଁକୁ ।

: ବୟ ଫ୍ରେଣ୍ଡ୍ ? ନା, ସେମିତି କିଛି ନୁହେଁ । ମୁଁ ତା ସହିତ କିଛି ଦିନ ଏକତ୍ର ନିଶା ସେବନ କରିଥିଲି । ଦୁଇବର୍ଷ ତଳେ ସେ କାଲିଫର୍ଣ୍ଣିଆରୁ ଆସିଥିଲା । ମୁଁ ଆସିଛି ତା'ର ଅନେକ ଆଗରୁ ଲସ୍ ଏଞ୍ଜେଲ୍‌ସରୁ । ସଦ୍ୟ ଆସିଲାବେଳେ ତା ପାଖରେ ଯଥେଷ୍ଟ ପରିମାଣରେ

ମରଫିନ୍, ହେରୋଇନ୍ ଆଉ ମରଜୁଆନା ଥିଲା । ତେଣୁ ତା ସହିତ ବନ୍ଧୁତ୍ୱ କରିବା ପାଇଁ ଅନେକ ହିପ୍‌ପିଣୀ ପାଗଳିନୀ ହୋଇଉଠିଥିଲେ । ତା'ର ବର୍ତ୍ତମାନ ଯେଉଁ ଗାର୍ଲ ଫ୍ରେଣ୍ଡ ତା ନାମ ହେଉଛି— ହ୍ୱାଟ୍ ? ମନେପଡୁନି । ଫରାସୀ ଝିଅ । ଖୁବ୍ ସୁନ୍ଦରୀ ନୁହେଁ; କିନ୍ତୁ ଖୁବ୍ ସେକ୍‌ସି । ଆଜିକାଲି ତ ସେକ୍‌ସ୍‌କୁ ବାଦ ଦେଇ ସୌନ୍ଦର୍ଯ୍ୟ ହୁଏନା । ହୁଏ ?

ମୁଁ କିଛି ଉତ୍ତର ଦେଲିନାଇଁ । ସେ ହୁଏତ ଆଶା କରୁଥିଲା, ମୁଁ ତାକୁ ପ୍ରଶଂସା କରି କହିବି, ସେ ଏକାଧାରରେ ସୁନ୍ଦରୀ ଆଉ ସେକ୍‌ସୀ !

: ପଲ୍‌ର ବର୍ତ୍ତମାନ ବାନ୍ଧବୀ ସହିତ ତମର ନିଶ୍ଚୟ ଖୁବ୍ ସୌହାର୍ଦ୍ଦ୍ୟ ନାହିଁ । ନା ?.

: ଇଣ୍ଡିୟାରେ ନିଜର ଖର୍ଚ୍ଚ ଯୋଗାଡ଼ କରିବା ପାଇଁ ମୁଁ ଗୋଟାଏ କିନ୍‌ଡ଼ାରଗାରଟେନ୍ ସ୍କୁଲରେ ମାଷ୍ଟ୍ରାଣୀ ହୋଇଛି, ଏଇଟା ସେ ଫରାସୀ–ଲଳନାର ପସନ୍ଦ ହୋଇ ନଥିଲା । ମତେ ପ୍ରଶ୍ନ କରିଥିଲା— ତା ହେଲେ ଆମେରିକା ଛାଡ଼ି ପଳାଇଆସିଛ କାହିଁକି ? ସମାଜର ଗୋଲାମୀ କରି ବଞ୍ଚିବା ପାଇଁ ତ ଆମେରିକାରେ ଅନେକ ପ୍ରକାର ସୁବିଧା ଅଛି ! ମୁଁ ତା ପ୍ରଶ୍ନର କୌଣସି ଉତ୍ତର ଦେଇ ପାରିନଥିଲି । ତା କଥାରେ ଅନେକ ଯୌକ୍ତିକତା ଥିଲା । ସି ହାଡ୍ ଏ ପଏଣ୍ଟ । ଯେଉଁ ଆମେରିକାନମାନେ ଆର୍ଥିକ ସମ୍ବଳ ଅଭାବରୁ ଇଣ୍ଡିୟାରେ ଦୁଃସ୍ଥ ହୋଇପଡ଼ନ୍ତି; ସେମାନଙ୍କୁ ସାହାଯ୍ୟ କରିବା ପାଇଁ ବମ୍ବେରେ ଆମେରିକା ଦାତବ୍ୟ ସଂଗଠନ ତରଫରୁ ଗୋଟିଏ ସଂସ୍ଥା ଅଛି— ସାଲଭେସନ୍ ଆର୍ମି । ସେଠାରେ ଇଚ୍ଛା କରିଥିଲେ ମୁଁ ରହି ପାରିଥାଆନ୍ତି । କିନ୍ତୁ ଅନେକ ଦିନ ଅନ୍ୟର ଦାନ ଆଉ ଦୟା ଉପରେ ନିର୍ଭର କରି କରି ମୁଁ କ୍ଳାନ୍ତ ହୋଇ ପଡ଼ିଥିଲି । ସେଥିପାଇଁ ନିଜ ଖର୍ଚ୍ଚ ନିଜେ ରୋଜଗାର କରିବା ପାଇଁ ମୋ ଭିତରେ ଏକ ଉଦ୍ଦାମ ଉତ୍ସାହ ସୃଷ୍ଟି ହୋଇଥିଲା । ସମାଜର ଦାସତ୍ୱ କରି ଗତାନୁଗତିକ ଭାବରେ ନିରାପଦ ସୁଖୀ ଜୀବନଯାପନ କରିବା ସହିତ ଏହାର କିଛି ସଂପର୍କ ନଥିଲା; କିନ୍ତୁ ସେ ଝିଅଟା ଏ ସବୁ କିଛି ବୁଝିବା ଅବସ୍ଥାରେ ନଥିଲା । ସେ ସଦ୍ୟ ସାମାଜିକ ପରମ୍ପରା, ଗତାନୁଗତିକତା ବିରୁଦ୍ଧରେ ଲଢ଼େଇ ଆରମ୍ଭ କରିଛି ମାତ୍ର । ବୟସ ଅଠରରୁ ପଚିଶ ଭିତରେ ହେବ । ୟୁରୋପ ଆମେରିକାର ଝିଅମାନଙ୍କ ଜୀବନରେ ଏଇ ଅଠର-ପଚିଶ ବର୍ଷ ହେଉଛି ସବୁଠାରୁ ସୁନ୍ଦର ସ୍ୱପ୍ନିଳ ବୟସ ! ନିଜ ସହିତ ନିଜର ଲଢ଼େଇ ତା ଜୀବନରେ ଆରମ୍ଭ ହୋଇନି । ସେଥିପାଇଁ ମତେ ଘୃଣା କରି, ପଲ୍ କାନ୍ଧରେ ହାତ ରଖି ନିଶା ଢୁଳୁଢୁଳୁ ଆଖିରେ ''ପ୍ରେମ କର, ଯୁଦ୍ଧ କର ନାହିଁ'' ର ବାର୍ତ୍ତା ପ୍ରଚାର ପାଇଁ ସେ କାଠମାଣ୍ଡୁ ଚାଲିଗଲା । ହାଉ ଆବ୍‌ସାର୍ଡ୍ !

ମୁଁ ଝିଅଟିର କଥା ଶୁଣି ମନେ ମନେ ତାକୁ ଶ୍ରଦ୍ଧା କରିବାକୁ ଆରମ୍ଭ କଲି । ହିପ୍‌ପିଣୀମାନଙ୍କ ସଂପର୍କରେ ମୋର କେତେକ ବଦ୍ଧମୂଳ ଖରାପ ଧାରଣା ଥିଲା । ସେମାନେ ଜୀବନ-ଭୀରୁ, ସୁଲଭ ସୁଖର ସୌଦାଗର । ସେକ୍‌ସ ଡ୍ରଗ୍‌ସ ଆଉ ଅସାମାଜିକତାର ଶୀକାର । କାଠମାଣ୍ଡୁରେ ଥିଲାବେଳେ ଶୁଣିଥିଲି ଉଲଗ୍ନ ହୋଇ ଚଳପ୍ରଚଳ ହେଉଥିବା ହେତୁ ନେପାଳ ସରକାର ସେମାନଙ୍କୁ ବହିଷ୍କାର କରିଥିଲେ । ଜଣେ ଜଣେ ହିପ୍‌ପିଣୀ ସମବେତ ସମ୍ଭୋଗର ସାମଗ୍ରୀରେ ପରିଣତ ହେବା କଥା ଖବରକାଗଜରେ ମଧ୍ୟ ପଢ଼ିଥିଲି ।

କିନ୍ତୁ ଏଇ ମାର୍କିନ ହିପ୍‌ପିଣୀ ମୋ ମନରୁ ସେ ଧାରଣା ଅନେକ ଅଦଳ ବଦଳ କରିଦେଲା ।

ଢୟେ ହୋଟେଲବାଲାର ଋଣ ଶୁଝିବା ପାଇଁ ସେ ମୋଠାରୁ ଟଙ୍କା ଧାର ନେଇଛି; କିନ୍ତୁ ତାଭଳି ଦୁଃସ୍ଥ ଆମେରିକାନ୍‌ମାନଙ୍କ ପାଇଁ ଖୋଲା ହୋଇଥିବା ସାଲ୍‌ଭେସନ୍ ଆର୍ମିର ଦ୍ୱାରସ୍ଥ ହୋଇନି । ଦୟା ଆଉ ଦାନ ନେଇ ନେଇ କ୍ଲାନ୍ତ ବୋଧ କରିବାରୁ କିନ୍‌ଡ଼ାରଗାର୍‌ଟନ୍ ସ୍କୁଲରେ ସାମୟିକ ଭାବରେ ଶିକ୍ଷୟିତ୍ରୀ ହୋଇଛି ।

କଥା କହୁ କହୁ ଚେୟାର ଉପରେ କେତେବେଳେ ସେ ଘୁମେଇ ପଡ଼ିଛି । ତା'ର ଚିଲା ଚିଲା ଆଖି ଡୋଳା ଉପରେ ଆଖି ପାଖୁଡ଼ା ମୁଦି ହୋଇଯାଇଛି ।

ମତେ ସେତେବେଳକୁ ଭୋକ । ଦିନ ପ୍ରାୟ ଗୋଟାଏ ପାଖାପାଖି । ତା'ର ଗପ ଶୁଣି ଶୁଣି ନିଜ କ୍ଷୁଧା କଥା ପାସୋରିଦେଇଥିଲି । ସେ ଶୋଇପଡ଼ିଲା ପରେ ମୋର ଖାଇବା କଥା ମନେପଡ଼ିଲା; କିନ୍ତୁ ଖାଇବାକୁ ବାହାରକୁ ଗଲେ ରୁମ୍‌ରେ ଚାବି ଦେଇ ଯିବାକୁ ହେବ । ସେଥିପାଇଁ ଝିଅଟାକୁ ନିଦରୁ ଉଠାଇ କହିବାକୁ ହେବ— ଭିତରପଟୁ ଦରଜା ବନ୍ଦ କରି ଶୁଅ । ମୁଁ ଖାଇସାରି ଫେରିବା ଆଗରୁ ବଣଚଢ଼େଇ ଭଳି ଦୂରକୁ ଉଡ଼ି ପଳାଅ ନାହିଁ ।

ଝିଅଟାର କାଲି ରାତିରେ ପ୍ରକୃତରେ ହୁଏତ ସୁନିଦ୍ରା ହୋଇନି । କେଉଁ ମୃତ–ଆମେରିକାନ ସୈନିକର ଭୂତ ତା ଆଖିରୁ ନିଦ୍ରା ପୋଛିନେଇଛି । କାଲି ରାତିରେ ହୁଏତ ଅର୍ଥାଭାବ ଯୋଗୁ ଡିନାର୍ ଖାଇ ନଥିଲା । କେବଳ ଚରସ୍ ଧୂଆଁ ଆଉ ଫେନି ମଦ୍ୟପାନ କରି କଟିଥିଲା ତା'ର ସାରାରାତି, ଅଧା ଦିନ । ଆଜି ଚାରିଖଣ୍ଡ ସାଣ୍ଡଉଇଚ୍ ଆଉ ସିଝା ଅଣ୍ଡା ପେଟରେ ପଡ଼ିବା ମାତ୍ରେ ତା'ର ଦୁଇ ଆଖିପତା ଯୋଡ଼ି ହୋଇ ଆସିଛି ।

ଝିଅଟିର ନିଦ୍ରା–ଭଙ୍ଗ କରିବାପାଇଁ ଇଚ୍ଛା ହେଲାନାହିଁ । ବରଂ କିପରି ଏକ ସଜଳ ମାୟାରେ ମନ ଓଦା ହୋଇଗଲା ।

ତା ପାଇଁ କ୍ଷୁଧାର ତାଡ଼ନା ସତ୍ତ୍ୱେ ମୁଁ ଅପେକ୍ଷା କରି ବସି ରହିଲି ।

ଜଣେ ଅପରିଚିତା ବିଦେଶିନୀ ପାଇଁ କ୍ଷୁଧିତ ଭାବରେ ଅପେକ୍ଷା କରିବାର ଏକ ବିଚିତ୍ର ଅନୁଭୂତିରେ ମନ ଭରିଗଲା । ଏଭଳି ଉପଲବ୍ଧି ଜୀବନରେ ଏଇ ପ୍ରଥମ ।

ଝିଅଟି କିନ୍ତୁ ବେଶୀ ସମୟ ଶୋଇଲା ନାହିଁ ।

ପ୍ରାୟ ଅଧଘଣ୍ଟାଏ ପରେ ନିଦରୁ ଉଠି ସେ ନିଜ ରିଷ୍ଟୱାଚ୍‌କୁ ନିରୀକ୍ଷଣ କଲା ଏବଂ କହିଲା, ଚାଲିଲି । ପୁଣି ଦେଖାହେବ । ଧନ୍ୟବାଦ ।





Quem Viu Goa nao precisa de Ver Lisboa.

ଯେ ଗୋଆ ଦେଖିଛି, ତାର ଲିସବନ ସହର ଦେଖିବା ଦରକାର ନାହିଁ ।

କିନ୍ତୁ ଯେଉଁଦିନ ଗୋଆ ଥିଲା ପର୍ତ୍ତୁଗାଲର Estado da India, ସେଦିନ ପର୍ତ୍ତୁଗାଲର ରାଜଧାନୀ ଲିସବନ ସହର ଥିଲା ଅନେକଙ୍କ ପାଇଁ ସ୍ୱପ୍ନର ରାଜଧାନୀ; କିନ୍ତୁ କାହିଁ ଗୋଆ, କାହିଁ ଲିସ୍‌ବନ ? ସାଢ଼େ ଚାରିଶହ ବର୍ଷବ୍ୟାପୀ ପର୍ତ୍ତୁଗୀଜ ଶାସନ ସେଇ ହଜାର ହଜାର କିଲୋମିଟର ବ୍ୟାପୀ ଅନନ୍ତ ଦୂରତ୍ୱକୁ କ୍ରମଶଃ ସଂକୁଚିତ କରି ଆଣିଲା।

ଗୋଆର ଇତିହାସ ଅତି ପ୍ରାଚୀନ । କେଉଁ ପୁରାଣ–ପ୍ରାଚୀନ କାଳରେ ଏହା ଥିଲା ପର୍ଶୁରାମ କ୍ଷେତ୍ର । ସିଂହାହୀ ପର୍ବତ ଅତିକ୍ରମ କରି ଭଗବାନ ପର୍ଶୁରାମ ପ୍ରଥମେ ଏଇ ଭୂଖଣ୍ଡରେ ପଦାର୍ପଣ କରିଥିଲେ । ତାଙ୍କର ପାଦଚିହ୍ନ ଅନୁସରଣ କରି ଆସିଲେ ଅନ୍ୟାନ୍ୟ ଆର୍ଯ୍ୟ । ମତ୍ସ୍ୟଜୀବୀ ମଣିଷ ଆଉ ଗୋରୁଗାଈ ପରିପୂର୍ଣ୍ଣ ଏଇ ଶାନ୍ତ ନିରୀହ ଅରଣ୍ୟଭୂମି ଭାରତବର୍ଷର ଅନ୍ୟ ଅଞ୍ଚଳ ସହିତ ସଂଯୁକ୍ତ ହେଲା; କିନ୍ତୁ ଗୋଆ ସହିତ ଯୋଗାଯୋଗ ପଥ ଥିଲା ଏକାନ୍ତ ଦୁର୍ଗମ । ଗୋଟିଏ ପଟେ ପଶ୍ଚିମ ଘାଟ ସମୁଚ୍ଚ ପର୍ବତମାଳା, ଅନ୍ୟ ପଟେ ଆରବ ସାଗରର ସୀମାହୀନ ଜଳରାଶି ଏହାକୁ ଆର୍ଯ୍ୟଭୂମି ଭାରତବର୍ଷଠାରୁ ଅଲଗା କରି ରଖିଥିଲା । ସେଦିନ ଗୋଆ ଥିଲା କୋଙ୍କଣ ପ୍ରଦେଶର ଅନ୍ତର୍ଗତ । କୋଙ୍କଣର ଦକ୍ଷିଣ ଦିଗରେ ଗୋମତୀ ନଦୀ କୂଳରେ ଅବସ୍ଥିତ ଥିଲା ବୋଲି ଏହାର ନାମ ଥିଲା ସେଦିନ ଗୋମନ୍ତକ । ଏହି ଗୋମନ୍ତକ ଅଞ୍ଚଳରେ ଗୋମତୀ ଭିନ୍ନ ଆଉ ଯେଉଁ ଦୀର୍ଘ ନଦୀଟି ପ୍ରବାହିତ ହେଉଥିଲା, ତା'ର ନାମ ଆଧନାଶିନୀ । ଆଜି ଗୋମତୀ ନାହିଁ, ଆଧନାଶିନୀ ମଧ ନାହିଁ । ଗୋମତୀର ନାମ ହେଉଛି ମାଣ୍ଡବୀ, ଆଧନାଶିନୀ ନଦୀର ନାମ ଜୁଆରୀ । ଗୋମନ୍ତକ ପରିଚିତ ହୋଇଛି ଗୋଆ ନାମରେ ।

ବିଗତ ହଜାରେ ବର୍ଷ ମଧ୍ୟରେ ରାଷ୍ଟ୍ରକୂଟବ ଓ କଦମ୍ବ ବଂଶର ହିନ୍ଦୁରାଜା, ବାହ୍ମନୀ, ଆଦିଲଶାହୀ ମୁସଲମାନ ବାଦଶାହାମାନେ ଏହି ଗୋମନ୍ତକ ଅଞ୍ଚଳକୁ ବିଭିନ୍ନ ସମୟରେ ଶାସନ କରିଥିଲେ । ସେତେବେଳକୁ ୟୁରୋପୀୟମାନଙ୍କ ପାଦଚିହ୍ନ ଆର୍ଯ୍ୟଭୂମି ଭାରତବର୍ଷକୁ ସ୍ପର୍ଶ କରି ନ ଥିଲା ।

କିନ୍ତୁ ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଆରମ୍ଭ ହେଲା ଆରବ ସାଗରର ଉତ୍ତାଳ ତରଙ୍ଗମାଳା ଉପରେ ପର୍ତ୍ତୁଗୀଜ ବଣିକମାନଙ୍କ ଆଧିପତ୍ୟ । ପ୍ରଥମେ ସେମାନଙ୍କ ବାଣିଜ୍ୟତରୀ ଏବଂ ପଛେ ପଛେ ଯୁଦ୍ଧତରୀ ଆରବ ସାଗରର ବିକ୍ଷୁବ୍ଧ ତରଙ୍ଗ ଉପରେ ଦୋଳାୟିତ ହେଲା ।

୧୪୯୮ ମସିହା ମେ ମାସ ୭ ତାରିଖ ଦିନ ଭାରତବର୍ଷ ଆସିବା ପାଇଁ ପ୍ରଥମ ଜଳପଥ ଆବିଷ୍କାର କଲେ ପର୍ତ୍ତୁଗୀଜ୍ ନାବିକ ଭାସ୍କୋଡ଼ାଗାମା । ଯେଉଁଦିନ ତାଙ୍କର ବାଣିଜ୍ୟ ତରୀ କେରଳର କାଲିକଟ ବନ୍ଦରରେ ନଙ୍ଗର ପକାଇଲା ସେଦିନ ପର୍ତ୍ତୁଗାଲ ୟୁରୋପୀୟ ବଣିକ ଦେଶମାନଙ୍କ ମଧ୍ୟରେ ହୋଇଗଲା ପ୍ରଥମ ଶ୍ରେଣୀର ନେତା । ଭାସ୍କୋଡ଼ାଗାମା କାଲିକଟ ବନ୍ଦରରେ ଅବତରଣ କଲା ସମୟରେ ସେଠାରେ ରାଜତ୍ୱ କରୁଥିଲେ ରାଜା ସାମୁରୀ । ତାଙ୍କଠାରୁ ଅନୁମତି ନେଇ କାଲିକଟରେ ଆରବ ବଣିକମାନେ ବାଣିଜ୍ୟ କରୁଥିଲେ । ସେମାନେ କାଲିକଟ ରାଜାଙ୍କୁ ବ୍ୟବସାୟ କରିବା ପାଇଁ ଅନୁମତି ନଦେବା ପାଇଁ ପ୍ରବର୍ତ୍ତାଇଲେ ସୁଦ୍ଧା ମୂଲ୍ୟବାନ ଉପହାର ଦେଇ ଗାମା ସାମୁରୀଙ୍କ ପାଖରୁ ବାଣିଜ୍ୟ କାରବାର ସୁବିଧା ସୁଯୋଗ ପାଇଗଲେ । କିଛିଦିନ ପରେ ଭାରତର ପଶ୍ଚିମ ଉପକୂଳରୁ ବିଭିନ୍ନ ପଣ୍ୟ ଦ୍ରବ୍ୟ ନେଇ ଗାମା ଫେରିଗଲେ ପର୍ତ୍ତୁଗାଲ । ଯେତିକି ମୂଲ୍ୟ ଦେଇ ସେ ଭାରତବର୍ଷରୁ ଜିନିଷପତ୍ର କିଣିନେଇଥିଲେ ତା'ର ଷାଠିଏ ଗୁଣ ଅଧିକ ମୂଲ୍ୟରେ ସେ ଜିନିଷ ପର୍ତ୍ତୁଗାଲରେ ବିକ୍ରି ହୋଇଗଲା ।

ଷାଠିଏ ଗୁଣ ଲାଭ !

ଆରବ ସାଗରର ଢେଉ ଭଳି ପର୍ତ୍ତୁଗାଲ ବଣିକମାନଙ୍କ ମନରେ ପ୍ରଲୋଭନର ଉତ୍ତାଳ ତରଙ୍ଗ ମଥା ପିଟିବାକୁ ଲାଗିଲା; କିନ୍ତୁ ସେମାନେ ବୁଝିପାରିଥିଲେ ଆରବ ବ୍ୟବସାୟୀମାନଙ୍କୁ ଭାରତବର୍ଷରୁ ବିଦାୟ ନ କରିବା ପର୍ଯ୍ୟନ୍ତ ସେମାନେ ନିରାପଦରେ ବ୍ୟବସାୟ କରି ମୁନାଫା ଉଠାଇ ପାରିବେ ନାହିଁ । ଫଳରେ ସେମାନେ ତୋପ କମାଣ ସାହାଯ୍ୟରେ ଆରବ ବ୍ୟବସାୟୀମାନଙ୍କ ଜାହାଜ ବୁଡ଼ାଇବାରେ ଲାଗିଲେ । ସେଥିରେ ସଫଳ ହେବାପରେ ଭାରତବର୍ଷ ପଶ୍ଚିମ ଉପକୂଳରେ ଛୋଟ ଛୋଟ ଶକ୍ତିହୀନ, ଦୁର୍ବଳ ରାଜ୍ୟ ସବୁ ଜୟ କରିବାର ନିଶା ସେମାନଙ୍କ ମନରେ ଉଦୟ ହେଲା । ପର୍ତ୍ତୁଗାଲ ବ୍ୟବସାୟୀମାନଙ୍କ ଏହି ଉଦ୍ୟମରେ ସହାୟତା କଲେ ସ୍ୱୟଂ ପର୍ତ୍ତୁଗାଲର ଶାସନ କର୍ତ୍ତା ।

ଭାସ୍କୋଡାଗାମା ପର୍ତ୍ତୁଗାଲ୍‌ରୁ ହିନ୍ଦୁସ୍ଥାନ ପର୍ଯ୍ୟନ୍ତ ଏକ ଜଳପଥ ଆବିଷ୍କାର କରି ପଶ୍ଚିମ ଉପକୂଳରେ ୟୁରୋପୀୟ ବାଣିଜ୍ୟ କୋଠି ପ୍ରତିଷ୍ଠା କରିବାରେ ନେତୃତ୍ୱ ନେଇଥିଲେ; କିନ୍ତୁ ହିନ୍ଦୁସ୍ଥାନରେ ରାଜ୍ୟ ପ୍ରତିଷ୍ଠା କରିବା ଉଦ୍ୟମର ନେତୃତ୍ୱ ନେଲେ ଆଉ ଜଣେ ପର୍ତ୍ତୁଗୀଜ୍ ନାବିକ — ଆଲ୍‌ବୁକର୍କ । ମାଲବାର ଉପକୂଳରୁ ଦୃଷ୍ଟି ଫେରାଇ ସେ ଗୋମନ୍ତକ ସମୁଦ୍ରତଟ ପ୍ରତି ଦୃଷ୍ଟି ନିବଦ୍ଧ କଲେ ।

ସେତେବେଳେ ଗୋମନ୍ତକ ବା ଗୋଆର ଶାସକ ଆଦିଲଶାହଙ୍କ ମୃତ୍ୟୁ ହୋଇଥିଲା । ତାଙ୍କ ଭଳି ତାଙ୍କ ପୁତ୍ର ଇସମାଇଲ୍ ଚତୁର କିମ୍ବା ଶକ୍ତିମାନ ପୁରୁଷ ନ ଥିଲେ । ଫଳରେ ଆଲ୍‌ବୁକର୍କ ଖୁବ୍ ସହଜରେ ଗୋଆର ତିସ୍‌ବାଡ଼ି, ମାରଗାଓଁ, ସାଷ୍ଟି ଓ ବାର୍ଦ୍ଦେଶ ଅଞ୍ଚଳ ଦଖଲ କରିନେଲେ ।

ଆରମ୍ଭ ହେଲା ଗୋଆରେ ପର୍ତ୍ତୁଗୀଜ ଶାସନ । ମନ୍ଦିର, ମସଜିଦ୍ ବଦଳରେ ଗୋଆର ମାଟିରେ ଗଢ଼ିଉଠିଲା ଅନେକ ସୁନ୍ଦର ଗୀର୍ଜା, କାଥେଡ୍ରାଲ !

କିନ୍ତୁ ପର୍ତ୍ତୁଗୀଜ ଶାସନର ଦୁଇଶହ, ଅଢ଼େଇ ଶହ ବର୍ଷ ପର୍ଯ୍ୟନ୍ତ ମଧ୍ୟ ଗୋଆ 'ପ୍ରାଚ୍ୟର ଲିସ୍‌ବନ୍' ହୋଇ ନ ଥିଲା । ଗୋଆର ଉଦ୍ଭିଦଜାତ ମସଲା, କାଜୁବାଦାମ ଆଉ ଖଣିଜ ସମ୍ପଦ ପର୍ତ୍ତୁଗୀଜ ବଣିକମାନେ ଆରବ ସାଗରର ନୂତନ ଆବିଷ୍କୃତ ଜଳ ପଥରେ ଜାହାଜରେ ଭରି ପର୍ତ୍ତୁଗାଲ ନେଇଯାଉଥିଲେ । ଗୋଆ କ୍ରମଶଃ ନିଃସ୍ୱ ରୁଗ୍‌ଣ ହୋଇଯାଉଥିବା ବେଳେ, ଲିସ୍‌ବନ୍‌ର ଦେହ ରେଖାରେ ଯୌବନର ଲାବଣ୍ୟ ଫୁଟିଉଠିଥିଲା ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଗୋଆର ଭାଗ୍ୟୋଦୟ ହେଲା ।

ପର୍ତ୍ତୁଗାଲର ମହାରାଣୀ ଦ୍ୱିତୀୟ ମାରିୟା ୧୮୪୩ ମସିହାରେ ଗୋଆକୁ ଏକ ସମୃଦ୍ଧ ନଗରରେ ପରିଣତ କରିବାପାଇଁ ଆଦେଶ ଦେଲେ । ଗୋଆର ଚେହେରା ଦ୍ରୁତ ଗତିରେ ବଦଳିବାକୁ ଲାଗିଲା । ନିର୍ମିତ ହେଲା ପର୍ତ୍ତୁଗୀଜ୍ ସ୍ଥାପତ୍ୟ ଶୈଳୀରେ ଇଟାକଂକ୍ରିଟର ଗୃହ । ତିଆରି ହେଲା ପ୍ରଶସ୍ତ ରାସ୍ତା । ଗଢ଼ିଉଠିଲା ଆଧୁନିକ ବନ୍ଦର, ଛୋଟ ଛୋଟ କଳକାରଖାନା । ଗୋଆର ଅଫୁରନ୍ତ ପ୍ରାକୃତିକ ସୌନ୍ଦର୍ଯ୍ୟ ସହିତ ଏହି ନଗରକୈନ୍ଦ୍ରିକ ସଭ୍ୟତାର ସମନ୍ୱୟ ଲିସ୍‌ବନ୍‌ର ମଧୁର ଭ୍ରାନ୍ତି ସୃଷ୍ଟିକଲା ଦର୍ଶକମାନଙ୍କ ମନରେ ।

ଏବିନିଦା ଦୋ ବ୍ରାଜିଲ୍ ରାସ୍ତାରେ ଠିଆହୋଇ ମୁଁ ସାଢ଼େ ଚାରିଶହ ବର୍ଷ ପର୍ତ୍ତୁଗୀଜ ଶାସିତ ଗୋଆର ସ୍ମୃତିଚାରଣ କରୁଥିଲି । ଗୋଆକୁ ଆସିବା ଆଗରୁ ତା'ର ଇତିହାସ, ଭୂଗୋଳ, ସଂସ୍କୃତି ଆଉ ଉତ୍‌ଥାନ ପତନର କାହାଣୀ ପଢ଼ିଆସିଥିଲି ବହିରୁ । ପାଂଜିମ୍‌ର ପ୍ରଶସ୍ତ ରାଜପଥରେ ଠିଆହୋଇ ଦୂରକୁ ଚାହିଁବା ମାତ୍ରେ ସେଇ ତଥ୍ୟମାଳା ମୋ ସ୍ମୃତିର ରାଜପଥରେ ମାର୍ଚ୍ଚିଂ କରିଗଲା ।

ପ୍ରାୟ ନଅ ଲକ୍ଷ ଲୋକଙ୍କ ବାସଭୂମି ଗୋଆ । ଏହାର ଉତ୍ତରରେ ମହାରାଷ୍ଟ୍ର, ପୂର୍ବରେ କର୍ଣ୍ଣାଟକ ଆଉ ପଶ୍ଚିମ ଦିଗରେ ଆରବ ମହାସାଗର । କ୍ଷେତ୍ରଫଳ ପ୍ରାୟ ତିନି ହଜାର ଛଅ ଶହ ବର୍ଗ କିଲୋମିଟର । ପ୍ରତିଦିନ ଜଳପଥରେ ଷ୍ଟିମର୍‌ରେ ଟ୍ରେନ୍ ଆଉ ବସ୍‌ରେ ଏବଂ ଆକାଶ ମାର୍ଗରେ ଉଡ଼ାଜାହାଜ ଯୋଗେ ହଜାର ହଜାର ଭ୍ରମଣକାରୀ ପ୍ରାଚ୍ୟର ରାଣୀ, ଲାବଣ୍ୟମୟୀ ଗୋଆକୁ ନୟନଭରି ଦେଖିବା ପାଇଁ ଛୁଟିଆସୁଛନ୍ତି । ଏମାନଙ୍କ ମଧ୍ୟରେ ଅଛନ୍ତି ମୋ ଭଳି ଭାରତବର୍ଷର ବିଭିନ୍ନ ଅଞ୍ଚଳର ସୌନ୍ଦର୍ଯ୍ୟ ଉପାସକ ଭ୍ରମଣକାରୀ; ଅଛନ୍ତି ମଧ୍ୟ ୟୁରୋପ, ଆମେରିକାର ସୌଖୀନ ଟୁରିଷ୍ଟ; ଯେଉଁମାନଙ୍କ ପାଇଁ ଡଲାର୍, ପାଉଣ୍ଡ୍ ଖର୍ଚ୍ଚ କରିବା ପାଇଁ ଦେଶ ଭ୍ରମଣ ଅନ୍ୟତମ ଉପାୟ ।

ଦିନେ ଭାସ୍କୋଡାଗାମା, ଆଲ୍‌ବୁକର୍କ, ଫ୍ରାନ୍‌ସିସ୍ ଜେଭିୟାର୍ ଆରବ ସାଗର ପାରି ହୋଇ ଆସିଥିଲେ ଗୋଆରେ ବାଣିଜ୍ୟ କରିବା ପାଇଁ; ଖ୍ରୀଷ୍ଟଧର୍ମ ପ୍ରଚାର କରିବା ଲାଗି । ଆଜିକାଲି ସାତ ସମୁଦ୍ର ପାରି ହୋଇ ଆସୁଛନ୍ତି ଅଗଣିତ ୟୁରୋପୀୟ, ଆମେରିକାନ୍ ତରୁଣ, ତରୁଣୀ ଜୀବନର ଅର୍ଥ ବୁଝିବା ପାଇଁ; ନୂତନ ଧର୍ମର ଦୀକ୍ଷା ନେବା ପାଇଁ !




ସେମାନେ ହିପ୍‌ପି, ସୋସିଆଲ୍ ଡ୍ରପ୍ ଆଉଟ୍ ।

ରୁଗଣ ପାଶ୍ଚାତ୍ୟ ସଭ୍ୟତାର ବ୍ୟାରୋମିଟର !

ଯୁଦ୍ଧପ୍ରତି ଭୟ, ଜୀବନ ପ୍ରତି ଅନାସ୍ଥା ଆଉ ସାମାଜିକ କର୍ତ୍ତବ୍ୟ ପାଳନ ପାଇଁ ଅନିଚ୍ଛା ଯୋଗୁ ସେମାନେ ଐଶ୍ୱର୍ଯ୍ୟମୟ ପାଶ୍ଚାତ୍ୟ ଦେଶରେ ଶ୍ୱାସରୋଧର ଯନ୍ତ୍ରଣା ଭୋଗ କରୁଛନ୍ତି । ଜନ୍ମଭୂମି ମନେହେଉଛି କାରାଗାର ଭଳି । ସେମାନେ ସେଥିପାଇଁ ପ୍ରତିଷ୍ଠିତ ସରକାର, ସମାଜ ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛନ୍ତି । ସେମାନଙ୍କର ବିଦ୍ରୋହର ବାଣୀ ହେଲା; ତମର ଏ ସମାଜ ପଚି ନଷ୍ଟ ହୋଇଯାଇଛି । ତମେ ସବୁ ସ୍ୱାର୍ଥପର, ନିଷ୍ଠୁର, ପ୍ରବଞ୍ଚକ । ତମେ ବିଶ୍ୱଶାନ୍ତି ନାମରେ ମେକଂ ନଦୀର ଜଳରେ ଯୁଦ୍ଧର ନିଆଁ ଜଳାଇ ଦେଇଛ । ଅଗଣିତ ନିରସ୍ତ୍ର ଜନତାଙ୍କୁ ପରମାଣୁ ଅସ୍ତ୍ରରେ ହତ୍ୟା କରିଛ । ଜାତୀୟ ସ୍ୱାର୍ଥ ନାମରେ ଅନିଚ୍ଛୁକ ସୈନିକଙ୍କୁ ଜୋର୍ କରି ଯୁଦ୍ଧଭୂମିରେ ବଳି ପଡ଼ିବା ପାଇଁ ପଠାଇ ଦେଇଛ । ଏଇ ହେଉଛି ଉନ୍ନତ ସଭ୍ୟତା, ବିଶ୍ୱଶାନ୍ତି ? ନା—ଆମେ ଏ ସମାଜରେ ରହିବାକୁ ଚାହୁଁନା । ଆମେ ତମର କୌଣସି ନିୟମ, ଶୃଙ୍ଖଳା ମାନିବୁ ନାହିଁ । ଆମେ ବନ୍ଧନହୀନ ଲକ୍ଷ୍ମୀଛଡ଼ା ଲଗାମହୀନ ତରୁଣ ତରୁଣୀ । ଆମେ ହିପ୍‌ପୀ ! ଆମର ଆହାର ବିହାର, ବେଶ ପୋଷାକ, ଜୀବନ ଧାରଣର ପ୍ରଣାଳୀ ସହିତ ତମର କୌଣସି ସାମଞ୍ଜସ୍ୟ ନାହିଁ । ଏହା କରିବା ଉଚିତ୍, ଏହା କରିବା ଅନ୍ୟାୟ—ଏ ନୀତିବାଣୀ ଶୁଣି ଶୁଣି ଆମ କାନ ବଧିର ହୋଇଯାଇଛି । ମରଜୁଆନା, ଚରସ୍, ଏଲ.ଏସ.ଡି. ହେରୋଇନ୍ ଆମ ମୁକ୍ତିର ପଥ । ସ୍ନାନ, ଆହାର ଭଳି ମୈଥୁନ ମଧ୍ୟ ଆମ ପାଇଁ ଏକ ଅଭ୍ୟାସ ଓ ଆବଶ୍ୟକତାର କଥା । ଆମକୁ ନୈତିକତାର ଆଦର୍ଶ କଥା ଶୁଣାଅ ନାହିଁ । କାରଣ ଆମେ ହିପ୍‌ପି, ହପୋକ୍ରିଟ୍ ନୁହଁ । ଆମେ ଯୁଦ୍ଧ ଚାହୁଁନାହିଁ, ପ୍ରେମ କରିବାକୁ ଚାହୁଁ । ଏ ପ୍ରେମରେ କୌଣସି ଆଧ୍ୟାତ୍ମିକ ରହସ୍ୟମୟତା ନାହିଁ । ନିଜକୁ ଉତ୍ତେଜିତ କରିବା ଏବଂ ସେଇ ଉତ୍ତେଜନାକୁ ଏକ ମଧୁର କ୍ଲାନ୍ତି ମାଧ୍ୟମରେ ପ୍ରଶମିତ କରିବା ପାଇଁ ଆମେ ପ୍ରେମ କରିବାକୁ ଚାହୁଁ । ଏହାହିଁ ହେଉଛି ଆମ ଲାଗି ଜୀବନର ଅନ୍ୟନାମ । ଡ୍ରଗ୍‌ସ୍, ସେକ୍‌ସ, ରକ୍ ମିଉଜିକ୍ ଆମ ଜୀବନର ବନ୍ଧୁ । ଆମେ ଏଥିପାଇଁ ହାତରେ ବନ୍ଧୁକ ନଉଠାଇ, ଚିଲମ୍ ଟୋକିନେଇଛୁ । ତମେ ଏସବୁ ପସନ୍ଦ କରୁନ ? So what ? ଫୁଃ...

ହଁ, ଭାସ୍କୋଡ଼ାଗାମା, ଆଲ୍‌ବୁକର୍କ ଆଉ ଫ୍ରାନ୍‌ସିସ୍ ଜେଭିୟାରଙ୍କ ବଦଳରେ ଲିସବନ୍, ବନ୍, ପ୍ୟାରିସ୍, ଲାସ୍ ଏଞ୍ଜେଲ୍‌ସରୁ ଏମାନେ ଆଜି ଅପରିଚ୍ଛନ୍ନ ପୋଷାକ ପିନ୍ଧି, ମୁଣ୍ଡରେ ପକ୍ଷୀର ପର ଖୋସି, ବେକରେ ରୁଦ୍ରାକ୍ଷମାଳା ପକାଇ ଦଳ ଦଳ ହୋଇ ଗୋଆ ଛୁଟିଆସୁଛନ୍ତି ନୂତନ ଧର୍ମର ଦୀକ୍ଷା ନେବା ପାଇଁ ! ସେ କ୍ୟାଥେଡ୍ରାଲ୍, ଶ୍ରୀମଙ୍ଗେଶମନ୍ଦିର କାଲାନ୍‌ଗୁଟେ ବିଚ୍ ଆଉ ମାର୍‌ଗାଓଁ ବନ୍ଦର ଭଳି ଭାରତୀୟ ଭ୍ରମଣକାରୀମାନଙ୍କ ପାଇଁ ଏଇ ବିଦେଶାଗତ ବିକ୍ଷଣ୍ଣ, ଅପରିଚ୍ଛନ୍ନ ନିଶାଖୋର ହିପ୍‌ପିମାନେ ମଧ୍ୟ ଅନ୍ୟତମ ଆକର୍ଷଣ ହୋଇଉଠିଛନ୍ତି ।

ସେପ୍‌ଟେମ୍ବରରୁ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଗୋଆର ସମୁଦ୍ରତଟ, ପାଖପଡ଼ା ଗାଁ ଏମାନଙ୍କ ଚରସ୍, ଗ୍ରାସ୍ ଧୂଆଁରେ ଆଚ୍ଛନ୍ନ ହୋଇଯାଏ । ଜୁନ୍ ପରେ ବର୍ଷାର ଅତ୍ୟାଚାର କଥା ସ୍ମରଣ

କରି ଏମାନେ ଚାଲିଯାଆନ୍ତି ଅନ୍ୟତ୍ର....ଯେଉଁଠି ଅନ୍ତତଃ ଏକ ନିରାପଦ ଛାତ ତଳେ ବର୍ଷାର ଅଶୃଙ୍ଖଳ ଅତ୍ୟାଚାରରୁ ନିଜ ମୁଣ୍ଡକୁ ବଞ୍ଚାଇ ବିନା ବାଧାରେ ଦେହକୁ ଉଷ୍ମ ଏବଂ ଉତ୍ତେଜିତ କରି ରଖିହେବ !

ମୋ ସାମ୍ନାରେ ଏବନିଦା ଦୋ ବ୍ରାଜିଲ୍ ଉପରେ ଦୁଇଜଣ ଶ୍ୱେତାଙ୍ଗ-ଶ୍ୱେତାଙ୍ଗିନୀ ଗୈରିକ ପୋଷାକ ପିନ୍ଧି, ଦୁଇହାତରେ ଗିନି ବଜାଇ 'ହରେକୃଷ୍ଣ ହରେରାମ' କୀର୍ତ୍ତନ କରି ଚାଲିଲେ । ଏମାନେ କେଉଁ ଗୁରୁଙ୍କ ପାଖରୁ କୃଷ୍ଣନାମ ଦୀକ୍ଷା ନେଇଛନ୍ତି, ସେ କଥା ମୋର ଅନୁମାନର ଊର୍ଦ୍ଧ୍ୱରେ । ହୁଏତ ଏହା ଅଗୁରୁ ଦୀକ୍ଷା ମଧ୍ୟ ହୋଇପାରେ କିନ୍ତୁ; ଦୁଇ ବିଦେଶୀ-ବିଦେଶିନୀ ଗିନି ବଜାଇ କୃଷ୍ଣନାମ କୀର୍ତ୍ତନ କଲାବେଳେ ଯେପରି ତନ୍ମୟ ହୋଇଯାଇଥିଲେ, ସେମାନଙ୍କ ନାମ-ସଂକୀର୍ତ୍ତନରେ କୌଣସି କୃତ୍ରିମତା କିମ୍ବା ଛଳନା ଥିଲା ବୋଲି ଭାବିବା କଷ୍ଟ ।

ମତେ ସେ ବିଷୟରେ ଭାବିବାକୁ ସମୟ ମଧ୍ୟ ମିଳିଲା ନାହିଁ ।

ଜଣେ ମଟର ସାଇକେଲ୍ ଆରୋହୀ ମୋର ଖୁବ୍ ନିକଟକୁ ଆସି ଖୁବ୍ ବିନୀତ କଣ୍ଠରେ ପ୍ରଶ୍ନକଲା—ମୁଁ ଆପଣଙ୍କୁ ଗୋଟିଏ ଲିଫ୍ଟ ଦେଇପାରେ କି ? ପ୍ରତି କିଲୋମିଟର ଦୁଇଟଙ୍କା । ମୁଁ ମଧ୍ୟ ଆପଣଙ୍କ ପାଇଁ ଗାଇଡ୍‌ର କାମ କରିବି । ସେଥିପାଇଁ ଆପଣଙ୍କୁ ଅଧିକ କିଛି ଦେବାକୁ ପଡ଼ିବ ନାହିଁ । ହଲ୍‌ଟିଂ ଚାର୍ଜ ମଧ୍ୟ ନାହିଁ । ଆପଣ ଗୋଆବାସୀଙ୍କ ଅତିଥି । ମୁଁ ଗୋଆର ଜଣେ ପ୍ରାଚୀନ ଅଧିବାସୀ ଭାବରେ ମୋର ଶକ୍ତିମତେ ଆପଣଙ୍କୁ ସାହାଯ୍ୟ କରିବି ।

ମୁଁ ତା'ର କଥା ଶୁଣିଲି; କିନ୍ତୁ କଅଣ ଉତ୍ତର ଦେବି ହଠାତ୍ ବୁଝିପାରିଲି ନାହିଁ । ମୋର ନୀରବତା ଲକ୍ଷ୍ୟ କରି ସେ ବୋଧହୁଏ ଭାବିଲା, ମୁଁ ତା'ର ଇଂରେଜୀ ଭାଷାର କଥା ବୁଝିପାରୁ ନାହିଁ । ତେଣୁ ଆଗରୁ ଯାହା ସେ ଥରେ ଇଂରେଜୀରେ କହିଥିଲା, ତାକୁ ଆଉ ଥରେ ହିନ୍ଦୀ ଭାଷାରେ ଅନୁବାଦ କରିବାକୁ ଲାଗିଲା । ତା'ପରେ ହିପ୍‌ପୀ ପକେଟରୁ ଗୋଟିଏ କାର୍ଡ ବାହାର କରି ମତେ ଦେଲା । କାର୍ଡରେ ଲେଖାଥିଲା ତା'ର ନାମ । ଗୋଆର ଭ୍ରମଣକାରୀମାନଙ୍କୁ ନିଜ ମଟର ସାଇକେଲରେ ବସାଇ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇବାର ଅଭିଜ୍ଞତାର ସଂକ୍ଷିପ୍ତ ବର୍ଣ୍ଣନା ।

ରିକ୍ସା, ବସ୍, ଟାକ୍ସି, ଘୋଡ଼ାଗାଡ଼ି, ଟେମ୍ପୋଚାଳକମାନେ ଟୁରିଷ୍ଟମାନଙ୍କୁ ନିଜ ଗାଡ଼ିରେ ବସାଇ ବୁଲାଇ ନିଅନ୍ତି । କିନ୍ତୁ ଏଥିପାଇଁ ମଟର ସାଇକେଲକୁ ମଧ୍ୟ ବ୍ୟବହାର କରାଯାଏ, ଏକଥା ମତେ ଜଣା ନଥିଲା ଭାରତବର୍ଷରେ ଅନ୍ୟତ୍ର ମୁଁ ଏହା ଦେଖିନାହିଁ । ଭଡ଼ା ଦେଲେ କେବଳ ଗୋଆରେ ବୋଧହୁଏ ମଟର ବାଇକ୍ ଚାଳକମାନେ ଭ୍ରମଣକାରୀମାନଙ୍କୁ ପଛରେ ବସାଇ ବୁଲାଇ ନିଅନ୍ତି ।

ମଟର ସାଇକେଲ୍ ଚାଳକ ବେଶ୍ ଭଦ୍ର ଅତିଥିବତ୍ସଳ ।

ଅସ୍ପଷ୍ଟ ଭାବରେ ଉଚ୍ଚାରଣ କରି ସେ ଯାହା କହିଲା ସେଥିରୁ ମତେ ଶୁଣାଗଲା ତା'ର ନାମ ହେଉଛି ମେରିଓ ଡା ସିଲ୍‌ଭା । କାଥୋଲିକ ଖ୍ରୀଷ୍ଟିୟାନ୍ ।

ମୁଁ ତା'ର ମଟର ସାଇକେଲରେ ବସି ଆଖପାଖରେ ଥିବା କୌଣସି ଦର୍ଶନୀୟ ସ୍ଥାନ ଦେଖିବା ପାଇଁ ରାଜି ଅଛି ବୋଲି କହିଲା ପରେ ସେ କହିଲା—ସାହେବ ! ଚାଲନ୍ତୁ ଆପଣଙ୍କୁ ପୁରୁଣା ଗୋଆର 'ଚାପେଲ୍ ଅବ୍ ସେଣ୍ଟ କ୍ୟାଥାରିନ୍' ଦେଖାଇ ଆଣିବି । ବହୁ ପୁରୁଣା ଏହି ସେଣ୍ଟ କ୍ୟାଥାରିନ୍ ଚାପେଲ୍ । ଦେଖିଲେ ଆପଣ ଖୁବ୍ ଖୁସି ହୋଇଯିବେ । ଗୋଆକୁ ଚିହ୍ନିବାକୁ ହେଲେ ତ ଆପଣଙ୍କୁ ପ୍ରାଚୀନ ଗୋଆକୁ ଯିବାକୁ ହେବ ! ଏ ପାଂଜିମ୍ ସହର, ମାର୍‌ଗାଓଁ ରେଳୱେ, ଟାରମିନାସ୍— ଏସବୁ ଆଧୁନିକତାର ପ୍ରତୀକ । ଭାରତବର୍ଷର ଅନ୍ୟ ଯେ କୌଣସି ସହର ଭଳି ଏହା ସାଧାରଣ ଦୋକାନ ବଜାର ବହୁଳ, କୋଳାହଳପୂର୍ଣ୍ଣ ଜନବସତି । ଗୋଆ ଦେଖିବାକୁ ଚାହାନ୍ତି ତ ଚାଲନ୍ତୁ ଦେଖିବେ ଓଲ୍ଡ୍ ଗୋଆ ! ଓଲ୍ଡ୍ ଇଜ୍ ଗୋଲଡ ! ନା ?

ପ୍ରଶ୍ନଟି ମତେ ପଚାରି ଉତ୍ତର ପାଇବା ଆଗରୁ ନିଜେ ହସିପକାଇଲା ମେରିଓ । ମୁଁ ମଧ ନୀରବରେ ହସି ତା'ର ହସକୁ ସମର୍ଥନ କଲି ।

ତା'ପରେ ଯିବା ରାସ୍ତାର ସେ ମତେ କହିଲା—ସାହେବ ! ପ୍ରକୃତରେ କେବଳ ପୁରୁଣା ଗୋଆ ସହରରେ ନୁହେଁ ; ଗୋଆର ଅଭ୍ୟନ୍ତରରେ ଥିବା ଗ୍ରାମାଞ୍ଚଳରେ ଅଛି ଅନେକ ଦର୍ଶନୀୟ ସ୍ଥାନ । ହେଲେ ଟୁରିଷ୍ଟମାନଙ୍କ ପାଇଁ ବିଭିନ୍ନ ଟ୍ରାଭେଲ୍ ଏଜେନ୍‌ସି ଆଉ ସରକାରଙ୍କ ପର୍ଯ୍ୟଟନ ବିଭାଗ ଯେଉଁ ଦର୍ଶନୀୟ ସ୍ଥାନର ବିବରଣୀ ବହି; ପ୍ରଚାରପତ୍ର ଛାପୁଛନ୍ତି ସେଥିରେ ଏସବୁ ସ୍ଥାନର ନାମ ନାହିଁ । ଏସବୁ ବସ୍ ଆଉ ଟାକ୍‌ସି ମାଲିକମାନଙ୍କ କାରସାଦି । ସୁଦୂର ଗ୍ରାମାଞ୍ଚଳକୁ ବସ୍ ଆଉ ଟାକ୍ସି ଯିବାର ସୁବିଧା ନାହିଁ, କେବଳ ମଟର ସାଇକେଲ୍‌ରେ ଆପଣମାନେ ସେଠାକୁ ଯାଇପାରନ୍ତି । କିନ୍ତୁ ବସ୍ ଆଉ ଟାକ୍‌ସି ମାଲିକମାନେ ଏକଥା ଚାହାନ୍ତି ନାହିଁ । ତାହାହେଲେ ସେମାନଙ୍କ ବ୍ୟବସାୟର ବାଆର୍ ବାଜିଯିବ । ଆଉ ଆଜିକାଲି ଟାକ୍‌ସି, ବସ୍ ଚଳାଚଳ ବ୍ୟବସାୟ ତ ଅଣ-ଗୋଆବାସୀ ବ୍ୟବସାୟୀଙ୍କ ହାତକୁ ଚାଲିଯିବାକୁ ବସିଛି !

ମେରିଓ ସିଲ୍‌ଭାର କଥାରେ ମୁଁ ତା ନିଜ ମଟରସାଇକେଲ୍ ବ୍ୟବସାୟର ପ୍ରସାର ପାଇଁ ଯୁକ୍ତି ଏବଂ ଅଣ ଗୋଆ ଅଧିବାସୀ ବ୍ୟବସାୟୀମାନଙ୍କ ପ୍ରତି ଏକ ଅସନ୍ତୁଷ୍ଟ ମନୋଭାବର ପରିଚୟ ପାଇଗଲି । ତା କଥାରେ ସ୍ୱାର୍ଥପରତାର ସ୍ୱର ମଧ ମିଶି ରହିଥିଲା ।

ମୁଁ ତାକୁ ପରାମର୍ଶ ଦେଲି—ଅଣଗୋଆବାସୀ ବ୍ୟବସାୟୀମାନେ ହୁଏତ ନିଜ ବ୍ୟାବସାୟିକ ସ୍ୱାର୍ଥ ପାଇଁ ଗ୍ରାମାଞ୍ଚଳର ଦର୍ଶନୀୟ ସ୍ଥାନକୁ ଟୁରିଷ୍ଟ ମ୍ୟାପ୍‌କୁ ଆସିବା ପାଇଁ ଚାହୁଁନାହାନ୍ତି । ଗୋଆ ସରକାର ତ ଗୋଆବାସୀ ଭୋଟଦାତାଙ୍କ ଦ୍ୱାରା ନିର୍ବାଚିତ ସରକାର ! ସେତ ଏ ଦିଗରେ କିଛି କରିପାରନ୍ତେ !

ମେରିଓ ତା'ର ଡ୍ରାଇଭର ସିଟ୍‌ରୁ ମୋ ଆଡ଼କୁ ପଛକୁ ଫେରି ଚାହିଁଲା ।

କହିଲା—ସାହେବ ! ସରକାରୀ ଦଳର ଚାନ୍ଦା ଦରକାର । ଗୋଆରେ ବସ୍ ରୁଟ୍ ଲାଇସେନ୍‌ସ ପାଇଁ ବସ୍ ମାଲିକମାନେ ଯେଉଁ ପରିମାଣର ଟଙ୍କା ଚାନ୍ଦା ଦେଇପାରିବେ, ଆମ ମଟର ସାଇକେଲ ଡ୍ରାଇଭିଂ ଆସୋସିଏସନ ତା'ର ଏକ ଶତାଂଶ ଚାନ୍ଦା ଦେଇପାରିବ ?

ସରକାର ମାତ୍ରେ ହିଁ ବଡ଼ଲୋକଙ୍କ କୁତ୍ତା । ସେଇମାନଙ୍କ ସ୍ୱାର୍ଥକୁ ସରକାର ତାହାଙ୍କ କୁକୁର ଭଳି ଜଗି ରଖି ପହରା ଦେଉଥାଏ । ଗରିବ ଲୋକଙ୍କ କଥା ବୁଝିବାକୁ ସରକାରର ସମୟ ନାହିଁ ।

ପାଂଜିମ୍‌ଠାରୁ ସାତ ଆଠ କିଲୋମିଟର ରାସ୍ତା । ସେଣ୍ଟ୍ କ୍ୟାଥାରିନ୍ ଚାପେଲ୍ ପାଖରେ ମଟର ସାଇକେଲର ଗତି ଶିଥିଳ ହୋଇଆସିଲା ।

ମଟର ସାଇକେଲ୍‌ରୁ ଅବତରଣ କରି ମୁଁ ପ୍ରଶ୍ନ କଲି—ନିଜ ସରକାରଙ୍କ ବିରୁଦ୍ଧରେ ତମେ ଯେପରି ନିଜର ମନୋଭାବ ପ୍ରକାଶ କରିଛ, ମନେହେଉଛି, ତମେ ଜଣେ ଉଗ୍ରପନ୍ଥୀ ଲେଫ୍‌ଟିଷ୍ଟ । ସତ ନା ମିଷ୍ଟର ସିଲ୍‌ଭା ?

ମେରିଓ ନିଜ ଦୁଇ କାନ୍ଧ ଆଉ କପାଳରେ ଅଙ୍ଗୁଳି ସ୍ପର୍ଶ କରି ଜିଭ କାମୁଡ଼ିପକାଇଲା । ତା ପରେ ନିଜ ଛାତି ଉପରେ ଝୁଲୁଥିବା କ୍ରଶ୍ ପ୍ରତୀକକୁ ଇଙ୍ଗିତ କରି କହିଲା—ମୁଁ ଜଣେ ଶାନ୍ତିପ୍ରିୟ କାଥଲିକ୍ । ମୁଁ କାହାରି ଅମଙ୍ଗଳ କାମନା କରେନା । କିନ୍ତୁ ପାସେଂଜର ଭାବରେ ଜଣେ ଭ୍ରମଣକାରୀଙ୍କୁ ପାଇବା ପାଇଁ ରାସ୍ତା କଡ଼ରେ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କଲାବେଳେ ମୁଁ ଯେତେବେଳେ ଦେଖେ ଯେ, ଅଗଣିତ ଯାତ୍ରୀଙ୍କୁ ଖୁନ୍ଦିଖାନ୍ଦି ଟୁରିଷ୍ଟ୍ ବସ୍ ସବୁ ଗୋଟାକ ପରେ ଗୋଟିଏ ରାସ୍ତାର ଧୂଳି ଉଡ଼ାଇ ଚାଲିଯାଉଛନ୍ତି; ମୋ ଅନିଚ୍ଛା ସତ୍ତ୍ୱେ ମୋ ମନରେ ଗୋଟାଏ ଅନେକଦିନୁ ଲିଭିଯାଇଥିବା ଅର୍ଦ୍ଧଦଗ୍ଧ ସଳିତା ପୁଣି ଜଳିଉଠେ । ମୁଁ ଯାତ୍ରୀମାନଙ୍କୁ ଦୋଷ ଦେଇ ପାରେନା । ବସ୍ ଚାଳକମାନଙ୍କୁ ମଧ୍ୟ ଦୋଷ ଦେଇ ଲାଭ ନାହିଁ । ସେମାନେ ବ୍ୟବସାୟୀ । ନିଜ ସ୍ୱାର୍ଥ ଦେଖିବା ସେମାନଙ୍କର ଧର୍ମ । କିନ୍ତୁ ଆମର ସରକାର—ଯିଏ ଆମ ଭୋଟରେ ଗାଦିରେ ବସିଛନ୍ତି, ସେ ଆମ ପାଇଁ କଅଣ କରିଛନ୍ତି ? ଏଭଳି ଭାବିବା କଅଣ ଭୁଲ ସାହେବ ?

: ମିଷ୍ଟର୍ ସିଲ୍‌ଭା ! ମତେ ସାହେବ ବୋଲି ଡାକନାହିଁ । ମୁଁ ଜଣେ ଇଣ୍ଡିୟାନ୍ । ଖୁବ୍ ବେଶୀ ହେଲେ ଜଣେ ଟୁରିଷ୍ଟ ବାବୁ ମାତ୍ର ! —ମୁଁ ତା'ର ବାରମ୍ବାର ସାହେବ ସମ୍ବୋଧନକୁ ପରିହାସରେ ପ୍ରତିବାଦ କଲି ।

ମେରିଓ ଖୁବ୍ ପରିହାସପ୍ରିୟ ଲୋକ ।

ସେ ଉତ୍ତର ଦେଲା—ଗୋଆକୁ ଯେଉଁ ସାହେବ ସାହେବାଣୀ ଆସୁଛନ୍ତି ସେମାନେ ବେକରେ ରୁଦ୍ରାକ୍ଷମାଳା ପକାଇ, ସଂକୀର୍ତ୍ତନ କରି ସନ୍ନ୍ୟାସୀ, ସନ୍ନ୍ୟାସିନୀ ହୋଇଯାଇଛନ୍ତି । ସେମାନଙ୍କୁ ସାହେବ କହିଲେ ମୂଳ ଶବ୍ଦଟାର ଗୁରୁତ୍ୱ ଚାଲିଯିବ । ବରଂ ରଙ୍ଗ ଖୁବ୍ ତୋଫା ନ ହେଲେ ବି ଆପଣମାନଙ୍କ ମିଜାଜ୍ ସାହେବୀ ସାହେବୀ । ସତ ନା ସାହେବ !

ତା'ର ଶେଷ ସାହେବ ସମ୍ବୋଧନ ଶୁଣି ମୁଁ ଉଚ୍ଚକଣ୍ଠରେ ହସିଉଠିଲି ।





ପାଂଜିମ୍ ସହରଠାରୁ ନଅ—ଦଶ କିଲୋମିଟର ଦୂରରେ ଓଲ୍ଡ ଗୋଆ ।

ଏ ସହର ପ୍ରଥମେ ଗଢ଼ିଉଠିଥିଲା ଗୋଆ ପର୍ତ୍ତୁଗୀଜ୍‌ମାନଙ୍କ ହାତରେ ପଡ଼ିବା ଆଗରୁ ମୁସଲମାନ ଶାସକମାନଙ୍କ ହାତରେ । ସେଦିନ ଏ ସହରରେ ଉଦ୍ଧତ ମସ୍ତକ ଉତ୍ତୋଳନ କରି ଠିଆହୋଇଥିଲା ଅନେକ ମନ୍ଦିର ଓ ତା'ର ପାଖେ ପାଖେ ମସଜିଦ୍; କିନ୍ତୁ ପର୍ତ୍ତୁଗୀଜ୍‌ମାନେ ଗୋଆର ଭାଗ୍ୟ ବିଧାତା ହେଲା ପରେ ଓଲ୍ଡ ଗୋଆରେ ଥିବା ମନ୍ଦିର ମସଜିଦ୍ ସବୁ ଧୂଳିସାତ୍ ହେଲା । ତା ବଦଳରେ ଗଢ଼ିଉଠିଲା ନୂତନ ଗୀର୍ଜା, କାଥେଡ୍ରାଲ୍, ଚ୍ୟାପେଲ୍ ।

ଆରବ ବ୍ୟବସାୟୀମାନଙ୍କୁ ହଟାଇ ଭାରତବର୍ଷରେ ବ୍ୟବସାୟ କରିବାକୁ ଆସିଥିଲେ ପର୍ତ୍ତୁଗୀଜ୍ ବଣିକମାନେ । ତା'ପରେ ଗୋଆର ମୁସଲମାନ୍ ବାଦଶାହାଙ୍କୁ ହରାଇ ସେମାନେ ରାଜତ୍ୱ କରିବା ଆରମ୍ଭ କଲେ । ତେଣୁ ଗୋଆର ମୁସଲମାନ ଅଧିବାସୀ ଆଉ ମୁସଲମାନ ଧର୍ମ ଉପାସନାର ପୀଠ ମସଜିଦ୍ ଉପରେ ସେମାନଙ୍କର କ୍ରୋଧ ପ୍ରବଳ ହେବା ସ୍ୱାଭାବିକ୍ ।

ଇସମାଇଲ୍ ଆଦିଲଶାହଙ୍କ ହାତରୁ ଗୋଆକୁ ଛଡ଼ାଇ ନେଲା ପରେ ପର୍ତ୍ତୁଗୀଜ ସେନାନାୟକ ଆଲ୍‌ବୁକର୍କ ମୁସଲମାନମାନଙ୍କ ଉପରେ କିପରି ଜଘନ୍ୟ ଅତ୍ୟାଚାର କରିଥିଲେ ତା'ର ବିବରଣୀ ସେ ପର୍ତ୍ତୁଗାଲର ରାଜାଙ୍କୁ ଲେଖିଥିବା ଏକ ପତ୍ରରେ ସ୍ପଷ୍ଟ ଉଲ୍ଲେଖ ଅଛି ।

ସେ ଲେଖିଥିଲେ—ଚାରିଦିନ ଧରି ଆମେ ମୁସଲମାନମାନଙ୍କୁ ହତ୍ୟା କରିବାକୁ ଲାଗିଲୁ । ଏମାନଙ୍କୁ ମସଜିଦ୍ ମଧ୍ୟରେ ବନ୍ଦ କରି ରଖି ନିଆଁ ଲଗାଇଦେଲୁ । କୌଣସି ମୁସଲମାନଙ୍କୁ ଜୀବନ୍ତ ଛାଡ଼ିଦେଲୁନାହିଁ । ସମୁଦାୟ ଛଅ ହଜାର ମୁସଲମାନ ମଲେ । ଏମାନଙ୍କ ମଧ୍ୟରେ ଥିଲେ ପୁରୁଷ, ସ୍ତ୍ରୀ ଓ ଶିଶୁ । ଆଉ ଯେଉଁ ମୁସଲମାନମାନେ ବାହାରେ ରହିଯାଇଛନ୍ତି ସେମାନଙ୍କୁ ଦେଖିବା ମାତ୍ରେ ପୋଡ଼ିଦିଆଯିବ ।

ତା'ପରେ ଆଲ୍‌ବୁକର୍କ ଅଧିକୃତ ଗୋଆରେ ପର୍ତ୍ତୁଗୀଜ୍ ସ୍ଥାପତ୍ୟ ଶୈଳୀରେ ନୂତନ ଇମାରତ୍‌ମାନ ନିର୍ମାଣ କଲେ । ମ୍ୟୁନିସ୍‌ପାଲିଟି ଆଉ କଚେରି ପ୍ରତିଷ୍ଠା କଲେ । ଏହି ସବୁ ସରକାରୀ ସଂସ୍ଥାରେ ନୂତନ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିଥିବା ଗୋଆନିଜ ଆଉ ହିନ୍ଦୁମାନଙ୍କୁ ପ୍ରଥମେ ନିଯୁକ୍ତି ଦେଇଥିଲେ; କିନ୍ତୁ ପରେ ହିନ୍ଦୁମାନଙ୍କ ଉପରେ ମଧ୍ୟ ତାଙ୍କର କୋପ ଦୃଷ୍ଟି

ପଡ଼ିଥିଲା । ତିସ୍‌ବାଡ଼ିରେ ଥିବା ସପ୍ତକୋଟେଶ୍ୱର ମନ୍ଦିରକୁ ଭାଙ୍ଗି ସେଠାରେ ସେ ଏକ ନୂତନ ଗୀର୍ଜା ନିର୍ମାଣ କରିଥିଲେ ।

କିନ୍ତୁ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର ଓ ମନ୍ଦିର ଭଙ୍ଗା କାର୍ଯ୍ୟ ଆଲ୍‌ବୁକର୍କଙ୍କ ପର୍ତ୍ତୁଗୀଜ ସହକର୍ମୀମାନେ ପସନ୍ଦ କରିନଥିଲେ । ହିନ୍ଦୁମାନଙ୍କ ଭିତରେ ଅସନ୍ତୋଷର ଅନଳ ପ୍ରଜ୍ୱଳିତ ହେଉଥିବା ଲକ୍ଷ୍ୟ କରି ସେମାନେ ଆଲବୁକର୍କଙ୍କ ବିରୁଦ୍ଧରେ ପର୍ତ୍ତୁଗାଲର ରାଜାଙ୍କ ପାଖକୁ ଗୋପନୀୟ ପତ୍ର ପଠାଇଲେ । ପର୍ତ୍ତୁଗୀଜର ରାଜା ମଧ୍ୟ ବୁଝିପାରିଲେ ସଂଖ୍ୟାଗରିଷ୍ଠ ହିନ୍ଦୁମାନଙ୍କୁ ଦମନ କରି ହିନ୍ଦୁସ୍ଥାନରେ ଖ୍ରୀଷ୍ଟଧର୍ମର ପ୍ରଚାର କରାଯାଇପାରେ, କିନ୍ତୁ ପର୍ତ୍ତୁଗୀଜ ବାଣିଜ୍ୟର ପ୍ରସାର ସମ୍ଭବ ନୁହେଁ । ସେଥିପାଇଁ ସେ ଆଲବୁକର୍କଙ୍କ ସ୍ଥାନରେ ଗୋଆର ଶାସନ ଦାୟିତ୍ୱଭାର ଗ୍ରହଣ କରିବା ପାଇଁ ସୋଆରିଶ ଲାଁପିସ ନାମକ ଜଣେ ନୂତନ ପର୍ତ୍ତୁଗୀଜ ସେନାପତିଙ୍କୁ ପଠାଇଥିଲେ ।

ପର୍ତ୍ତୁଗାଲ ସରକାରଙ୍କ ଏଭଳି କଠୋର କାର୍ଯ୍ୟାନୁଷ୍ଠାନ ଫଳରେ ଆଲ୍‌ବୁକର୍କଙ୍କ ସ୍ୱପ୍ନ-ଭଙ୍ଗ ହୋଇଥିଲା । ସେ ଏ ଆଘାତ ସହି ପାରି ନଥିଲେ । ସେ ଏଭଳି ଭାଙ୍ଗିପଡ଼ିଲେ ଯେ ୧୫୧୫ ମସିହା ଡିସେମ୍ବର ୧୬ ତାରିଖ ଦିନ ତାଙ୍କର ମୃତ୍ୟୁ ହୋଇଗଲା ।

କିନ୍ତୁ ମୃତ୍ୟୁ ଆଗରୁ ତାଙ୍କରି ପ୍ରଚେଷ୍ଟା ଯୋଗୁ ପ୍ରାଚୀନ ଗୋଆ ସହର ପର୍ତ୍ତୁଗୀଜ୍ ଢାଞ୍ଚାରେ ନୂତନ ଶୈଳୀରେ ଜୀବନ୍ୟାସ ପାଇଥିଲା । ଏଇ ପ୍ରାଚୀନ ଗୋଆ ପ୍ରାୟ ଶହେ ବର୍ଷ କ [illegible] ୀ ଥିଲା; କିନ୍ତୁ ଷୋଡ଼ଶ ଶତାବ୍ଦୀରେ ଏଇ ରାଜଧାନୀ ସହର ଉପରେ ପଡ଼ିଲା ପ୍ଲେଗ ମହାମାରୀର ବିଷ ଦୃଷ୍ଟି । ଏଇ ମହାମାରୀରେ ପ୍ରାୟ ଦୁଇଲକ୍ଷ ଲୋକ ପ୍ରାଣ ହରାଇଲେ । ସହର ଜନଶୂନ୍ୟ ଦେଖାଗଲା । ଫଳରେ ତତ୍‌କାଳୀନ ପର୍ତ୍ତୁଗୀଜ୍ ସରକାର ପ୍ରାଚୀନ ଗୋଆରୁ ଆଧୁନିକ ପାଞ୍ଜିମ୍ ସହରକୁ ଗୋଆର ରାଜଧାନୀ ଉଠାଇ ଆଣିଥିଲେ ।

ଏ ସବୁ ଇତିହାସର କଥା ।

ପ୍ରାଚୀନ ଗୋଆ ସହରରେ ସେଣ୍ଟ କ୍ୟାଥାରିନ୍ ଚ୍ୟାପେଲ୍ ପାଖରେ ଅବତରଣ କରିବା ମାତ୍ରେ ଇତିହାସର ସେଇ କେତୋଟି ନାଟକୀୟ ଦୃଶ୍ୟ ମୋ ଆଖି ଆଗରେ ନାଚିଉଠିଲା ।

ମେରିଓ ସିଲ୍‌ଭା ନିକଟବର୍ତ୍ତୀ କେଉଁ ଚା' ଦୋକାନରୁ ମୋ ପାଇଁ ଗୋଟିଏ କପ୍ ବାମ୍ଫ ଉଠା ଚା ନେଇଆସିଲା ।

କହିଲା— ସାହେବ ! ଏଇ ନିଅନ୍ତୁ ଚା !

ସେଇ ଉଷ୍ମ ଚା'ରେ ମିଶି ରହିଥିଲା ମେରିଓର ଅତିଥିବତ୍ସଳ ହୃଦୟର ସ୍ୱାଦ । ମୁଁ ମନା କରି ପାରିଲି ନାହିଁ ।

ସତରେ ଭାରି ଶାନ୍ତ, କୋମଳ ପ୍ରାଚୀନ ଗୋଆ ସହରର ସୌନ୍ଦର୍ଯ୍ୟ । ତା'ର ଛାୟା ଶୀତଳ ପରିବେଶ, ଚର୍ଚ୍ଚ, କାଥେଡ୍ରାଲ୍ ଆଉ ବ୍ୟାସିଲିକାର ଆଧ୍ୟାତ୍ମିକ ଆବେଦନ ମନକୁ ଏକ ସ୍ନିଗ୍ଧ ଆନନ୍ଦରେ ଭରିଦେଉଥିଲା । ପାଞ୍ଜିମ୍ ସହରର ଧୂଳିଧୂସରିତ, ଶବ୍ଦାୟିତ ଜୀବନ ପ୍ରବାହ

ମଧ୍ୟରେ ଗୋଆର ସୌନ୍ଦର୍ଯ୍ୟ ଦେଖି ମଧ୍ୟ ଅନୁଭବ କରିହୁଏନା । କିନ୍ତୁ ପ୍ରାଚୀନ ଗୋଆ ସହରର ନିଃସର୍ଗ ସହଜରେ ମନରେ ଦାଗକାଟି ଯାଏ ।

ମେରିଓ ମତେ ବାହାରେ ଜୋତା ଖୋଲି ରଖି ଚ୍ୟାପେଲ୍ ଭିତରକୁ ଯିବାପାଇଁ ଆମନ୍ତ୍ରଣ କଲା । ମୁଁ ଭିତରକୁ ଯାଇ ପର୍ତ୍ତୁଗୀଜ ସ୍ଥାପତ୍ୟ କଳାର ନିଦର୍ଶନ ନିରୀକ୍ଷଣ କରୁଥିବାବେଳେ ସେ କହିଲା— ସାହେବ ! ଏ ଚ୍ୟାପେଲ୍ କେବଳ ଖ୍ରୀଷ୍ଟିୟାନମାନଙ୍କ ଉପାସନା ପୀଠ ନୁହେଁ; ଏହା ପର୍ତ୍ତୁଗୀଜ୍‌ମାନଙ୍କ ବିଜୟ ତୋରଣ । ଏଇ ଭୂମିରେ ଠିଆହୋଇ ଯୁଦ୍ଧ କରୁଥିବାବେଳେ ଆଲ୍‌ବୁକାର୍କଙ୍କ ପାଖରେ ଶତ୍ରୁର ଆତ୍ମସମର୍ପଣ ସମ୍ବାଦ ପହଞ୍ଚିଥିଲା । ବିଜୟ ଆନନ୍ଦରେ ଉଲ୍ଲସିତ ହୋଇ ଏଇ ଭୂମି ସ୍ପର୍ଶ କରି ସେ ପ୍ରତିଜ୍ଞା କରିଥିଲେ, ଯେଉଁ ପ୍ରଭୁଙ୍କ କରୁଣା ଯୋଗୁ ସମୁଦ୍ର ପାରି କେଉଁ ଦୂର ଦେଶରୁ ଆସି ସେ ପର୍ତ୍ତୁଗାଲ ଶାସନର ବିଜୟ ପତାକା ଉଡ଼ାଉଛନ୍ତି; ସେଇ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଉପାସନା ପାଇଁ ସେ ଏହି ଭୂମି ଉପରେ ଏକ ଚ୍ୟାପେଲ୍ ନିର୍ମାଣ କରିବେ । ସେ ତାଙ୍କର ଶପଥ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ୧୫୧୦ ମସିହାରେ ଗଢ଼ି ଉଠିଥିଲା ଏଇ ସେଣ୍ଟ କ୍ୟାଥାରିନ୍ ଚ୍ୟାପେଲ୍ !

ସେଣ୍ଟ୍ କ୍ୟାଥାରିନ୍ ଚ୍ୟାପେଲ୍ ନିର୍ମାଣ କାହାଣୀ ବର୍ଣ୍ଣନା କଲାବେଳେ ମେରିଓ ଆଖି ଦୁଇଟି ଗୀର୍ଜାରେ ଜଳୁଥିବା ମହମବତିର ଆଲୋକଭଳି ଉଜ୍ଜ୍ୱଳ ଦେଖାଯାଉଥିଲା । ମୁଁ ତାକୁ ନୀରବରେ ଲକ୍ଷ୍ୟ କଲି; କିନ୍ତୁ କିଛି ମନ୍ତବ୍ୟ କଲିନାହିଁ । କିନ୍ତୁ ପର୍ତ୍ତୁଗୀଜ୍‌ମାନଙ୍କ ପ୍ରତି ତା'ର ପ୍ରଚ୍ଛନ୍ନ ଆକର୍ଷଣ ଅନୁଭବ କରି ପ୍ରଶ୍ନ କଲି, ମିଷ୍ଟର ସିଲ୍‌ଭା !୧୯୬୧ ମସିହାରେ ଗୋଆ ଭାରତର ଏକ ଅଚ୍ଛେଦ୍ୟ ଅଙ୍ଗରେ ପରିଣତ ହୋଇଗଲା ପରେ ଗୋଆର ଲୋକେ କଅଣ ଅଧିକ ସୁଖରେ ନାହାନ୍ତି ?

ମୋ ପ୍ରଶ୍ନ ଶୁଣି ମେରିଓ ପ୍ରଥମେ ବିସ୍ମୟର ଏକ ମୃଦୁ ଆଘାତରେ ବିଚଳିତ ହୋଇଗଲାଭଳି ମନେହେଲା । ନିଜକୁ ସମ୍ଭାଳିନେବା ପାଇଁ ତାକୁ ବେଶୀ ସମୟ ଲାଗିଲା ନାହିଁ । ସେ ଖୁବ୍ ଉତ୍ସାହିତ ହୋଇଥିବାଭଳି ମୁଖଭଙ୍ଗୀ କରି କହିଲା— ଏଇଟା ସାହେବ ଗୋଟାଏ କଅଣ ପ୍ରଶ୍ନ ହେଲା ? ସାଢ଼େ ଚାରିଶହ ବର୍ଷ ବିଦେଶୀ ଶାସନ ଅଧୀନରେ ରହିବା ପରେ ଗୋଟିଏ ଦେଶର ଲୋକେ ଯେତେବେଳେ ସ୍ୱାଧୀନ ହୁଅନ୍ତି; ସେତେବେଳେ ସେମାନଙ୍କର ଆନନ୍ଦକୁ କଅଣ ଭଲ ଖାଇବା, ଭଲ ପିନ୍ଧିବାର ହିସାବପତ୍ରରେ ମପାଯାଏ ? ସାହେବ ! ଆପଣ ମତେ ମାଫ୍ କରିବେ । ଆପଣମାନେ ମାତ୍ର ଦେଶ ଶହ ବର୍ଷକାଳ ଇଂରେଜ ଶାସନ ଅଧୀନରେ ଥିଲେ । ଭାରତବର୍ଷର ଆଉ କେଉଁ ଅଞ୍ଚଳର ଲୋକେ ହୁଏତ ଆଉ ଦଶ କୋଡ଼ିଏ ବର୍ଷ ଅଧିକ ଆଗରୁ ଇଂରେଜ ଶାସନର ଅଧୀନସ୍ଥ ହୋଇଥିବେ । କିନ୍ତୁ ଆମେ ଗୋଆର ଲୋକେ ଚାରିଶହ ବର୍ଷରୁ ଅଧିକ କାଳ ପର୍ତ୍ତୁଗୀଜ୍ ଶାସନ ଅଧୀନରେ ରହିଥିଲୁ । ମୋ ବାପା, ଅଜା ସାତପୁରୁଷ ଧରି ସାତଦରିଆ ପାରି କେଉଁ ପର୍ତ୍ତୁଗାଲ ରାଜାକୁ ନିଜର ଭାଗ୍ୟବିଧାତା ବୋଲି ମାନିଆସିଥିଲେ । ହେଲେ କିନ୍ତୁ ମନ ମାନି ନଥିଲା । ସେଥିପାଇଁ ୧୬୫୪ ସାଲରେ; ଯେତେବେଳେ ଇଂରେଜମାନେ ଭାରତର ଅନ୍ୟ ଅଞ୍ଚଳର ସ୍ୱାଧୀନତା ଉପରେ ଲୋଲୁପ ଦୃଷ୍ଟି

ସୁଦ୍ଧା ପକାଇ ନଥିଲେ ସେତେବେଳେ ଖ୍ରୀଷ୍ଟିୟାନ୍ ପାଦ୍ରୀ କାସ୍ତ୍ରୁ ପ୍ରଥମେ ପର୍ତ୍ତୁଗୀଜ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ତାଙ୍କୁ ଏଥିରେ ବହୁ ହିନ୍ଦୁ ମଧ୍ୟ ସାହାଯ୍ୟ କରିଥିଲେ । ଲକ୍ଷ୍ୟ ଥିଲା ଯେଉଁ ଆଦିଲଶାହୀ ବଂଶଧରମାନଙ୍କ ହାତରୁ ପର୍ତ୍ତୁଗୀଜ୍ ଶାସକମାନେ ଗୋଆକୁ ଛଡ଼ାଇ ନେଇଥିଲେ; ସେହି ଆଦିଲଶାହୀ ବଂଶଧରମାନଙ୍କ ହାତରେ ପୁଣି ଗୋଆକୁ ଅର୍ପଣ କରିଦେବା । ପାଦ୍ରୀ କାସ୍ତ୍ରୁ ସାହେବଙ୍କ ଏ ଉଦ୍ୟମ ସଫଳ ହୋଇ ନଥିଲା । ତା'ପରେ ୧୭୮୭ ମସିହାରେ ଗୋଁସାଲ୍ଭିହସ୍ ନାମକ ଆଉ ଜଣେ ପାଦ୍ରୀ ଗୋଆକୁ ସ୍ୱାଧୀନ କରିବା ପାଇଁ ଏକ ସଶସ୍ତ୍ର ବିପ୍ଳବର ଯୋଜନା କରିଥିଲେ । ଗଭର୍ଣ୍ଣର ଏ ବିଦ୍ରୋହର ସୂଚନା ଆଗରୁ ପାଇଯିବାରୁ ତାହା ବ୍ୟର୍ଥ ହୋଇଗଲା । ଗୋଆବାସୀ ମରାଠୀ ରାଣାମନେ ମଧ୍ୟ ଅନେକ ଥର ପର୍ତ୍ତୁଗୀଜ ଶାସନ ହଟାଇବା ପାଇଁ ଏଠାରେ ବିଦ୍ରୋହ କରି ବ୍ୟର୍ଥ ହେଲେ । ୧୮୯୫ ମସିହାରେ ପର୍ତ୍ତୁଗୀଜ୍ ଶାସକମାନେ ଯେତେବେଳେ ଆଫ୍ରିକାରେ ଥିବା ନିଜର ଉପନିବେଶଗୁଡ଼ିକ ରକ୍ଷା କରିବାପାଇଁ ଗୋଆର ହିନ୍ଦୁ ସୈନ୍ୟମାନଙ୍କୁ ଯୁଦ୍ଧ କରିବାକୁ ପଠାଇଲେ, ସେତେବେଳେ ମଧ୍ୟ ଗୋଆର ଲୋକେ ସ୍ୱାଧୀନ ହେବାପାଇଁ ଆନ୍ଦୋଳନ କରିଥିଲେ । ତେଣୁ ଗୋଆର ଲୋକେ ଯେ ମୂଳରୁ ପର୍ତ୍ତୁଗୀଜ୍ ଶାସନକୁ ମାନି ନେଇ ନଥିଲେ, ସୁବିଧା ପାଇବା ମାତ୍ରେ ବିଦ୍ରୋହ କରିଥିଲେ, ଏଥିରୁ ଆପଣ ବୁଝିବେ ଆମ ପାଇଁ ସ୍ୱାଧୀନତାଠାରୁ ବଳି ଅଧିକ ଆନନ୍ଦର କଥା କିଛି ନାହିଁ କି ନଥିଲା ।

: ତମେ ନିଜେ କେବେ ଏ ସ୍ୱାଧୀନତା ଲଢ଼େଇରେ ଭାଗ ନେଇଥିଲ ?

: ମୁଁ ? ଆଃ, ସେ ସବୁ କଥା ମନେପଡ଼ିଗଲେ ଆଜି ବି ମୋ ଛାତି ଭିତର କଅଣ ହେଇଯାଏ । ମୁଁ ସେତେବେଳେ ଆଠ ନଅ ବର୍ଷର ପିଲା । ସ୍କୁଲରେ ପଢୁଥାଏ । ମରଗାଓଁ ମ୍ୟୁନିସିପାଲିଟି ପଡ଼ିଆରେ ଡକ୍ଟର ରାମ ମନୋହର ଲୋହିଆ ଭାଷଣ ଦେଉଥାଆନ୍ତି । ତ୍ରିରଙ୍ଗୀ ଝଣ୍ଡା ଉଡୁଥାଏ । ଜନ ଆନ୍ଦୋଳନ ଦ୍ୱାରା ପର୍ତ୍ତୁଗୀଜ୍ ଶାସନକୁ ଆରବ ସାଗର ମଝିକୁ ଫିଙ୍ଗିଦେବା ପାଇଁ ଲୋହିଆ ସାହେବ ଆହ୍ୱାନ କରିବା ମାତ୍ରେ ତାଙ୍କୁ ପର୍ତ୍ତୁଗୀଜ୍ ପୋଲିସ ଗିରଫ କରିନେଲା । ଗିରଫ ହେବା ମାତ୍ରେ ଲୋହିଆ ସାହେବ ସ୍ଳୋଗାନ୍ ଦେଲେ, ଜୟହିନ୍ଦ୍ ! ମୋର ମନେଅଛି, ମୁଁ ମଧ୍ୟ କଣ୍ଠଫଟାଇ ଜୟହିନ୍ଦ, ଜୟହିନ୍ଦ ବୋଲି ଚିତ୍କାର କରିଥିଲି । ଅଥଚ ମୋ ବାପା ଲିସ୍‌ବନ୍‌ରେ ଗୋଟିଏ ମଦ ଦୋକାନରେ ବାର୍‌ମାନ୍ ଚାକିରି କରୁଥିଲେ । ତା'ପରେ ଯେଉଁଦିନ ଭାରତୀୟ ସୈନ୍ୟମାନେ ଗୋଆ ମଧ୍ୟରେ ପ୍ରବେଶ କଲେ, ମୁଁ ମଧ୍ୟ ଅନ୍ୟମାନଙ୍କ ଭଳି ହାତରେ ତ୍ରିରଙ୍ଗୀ ଝଣ୍ଡା ଧରି ରାସ୍ତାରେ ନାଚିଥିଲି । ସେତେବେଳେ ମୋର ବୟସ ଅବା କେତେ ? ବାଇଶ, ତେଇଶ ବର୍ଷର ଯୁବକ । ମନରେ ଉନ୍ମାଦନା ଥିଲା, ଆଖିରେ ଥିଲା ସ୍ୱପ୍ନ ।

ହଠାତ୍ ଚୁପ୍‌ହୋଇଗଲା ମେରିଓ ।

ସେତେବେଳକୁ ସନ୍ଧ୍ୟାର ଅନ୍ଧାର ପ୍ରାଚୀନ ଗୋଆର ଦୀର୍ଘ ନଡ଼ିଆ ଗଛର ସରୁ ସରୁ ପତ୍ର ଫାଙ୍କରେ ଝରିପଡୁଥିଲା ।

ମୁଁ ଲକ୍ଷ୍ୟ କଲି, କଥା ଶେଷ କଲାବେଳକୁ ମେରିଓର ଦୁଇ ଆଖିରେ ମଧ୍ୟ କ୍ଳାନ୍ତିର ଅନ୍ଧକାର ଖୁନ୍ଦି ହୋଇ ଆସୁଛି । ଯେପରି କେଉଁ ଦୂର ଅତୀତର ନୀଳ ସ୍ୱପ୍ନ ହଠାତ୍ ତା'ର ଦୁଇ ଆଖିର ଦିଗନ୍ତ ରେଖାରେ ଧୂସର, ମଳିନ ହୋଇଯାଇଛି !

ମୁଁ ପ୍ରଶ୍ନ କଲି– ଗୋଆର ରାଜପଥରେ ଭାରତୀୟ ସୈନ୍ୟମାନେ ବିଜୟ ଶୋଭାଯାତ୍ରା କରି ଗଲାବେଳେ ତମ ଆଖିରେ ଯେଉଁ ସ୍ୱପ୍ନ ଦିନେ ଘନୀଭୂତ ହୋଇଆସିଥିଲା; ସେ ସ୍ୱପ୍ନ କଅଣ ସ୍ୱାଧୀନତା ପରେ ସାର୍ଥକ ହୋଇଛି ମେରିଓ !

ମେରିଓ ସିଲ୍‌ଭା ମୃଦୁ ହସି ମୁଣ୍ଡ ହଲାଇଲା ।

ତା'ପରେ ଖୁବ୍ କୁଣ୍ଠିତ କଣ୍ଠରେ କହିଲା– ସତ କହିବାକୁ ଗଲେ ଆମେ ଗୋଆନିଜ୍ ଖ୍ରୀଷ୍ଟିୟାନ୍‌ମାନେ ପର୍ତ୍ତୁଗୀଜ୍ ଶାସନ କାଳରେ ଟିକିଏ ଅଧିକ ସୁବିଧା ସୁଯୋଗ ପାଉଥିଲୁ । ପର୍ତ୍ତୁଗୀଜ୍ ଇଂରେଜ୍ ଶାସିତ ଦେଶ ବିଦେଶରେ ଆମକୁ ଚାକିରି କ୍ଷେତ୍ରରେ ଅଗ୍ରାଧିକାର ମିଳୁଥିଲା । ମୋ ବାପା ଲିସ୍‌ବନ୍‌ର କେଉଁ ଏକ ମଦ ଦୋକାନରେ ବାର୍‌ମାନ୍ ଚାକିରି କରି ଯେତିକି ପଇସା ଆମ ପାଖକୁ ପଠାଉଥିଲେ ସେଥିରେ ଓଲ୍‌ଡ ଗୋଆରେ ଆମର ଗୋଟାଏ ଭଲ ଘର ତୋଳାହୋଇଥିଲା । ମୁଁ ଯେଉଁ ମଟର ସାଇକେଲ୍‌ରେ ଯାତ୍ରୀ ବ୍ୟବସାୟ କରୁଛି, ସେଇଟା ମଧ୍ୟ ବାପା କିଣିଦେଇଥିଲେ । କିନ୍ତୁ ସ୍ୱାଧୀନ ଗୋଆରେ ନିଜ ଖର୍ଚ୍ଚ ତୁଲାଇବା ପାଇଁ ମୋର ରୋଜଗାର ଯଥେଷ୍ଟ ନୁହେଁ । କଂପିଟିସନ୍ ବଢ଼ିଗଲାଣି । ଗୋଆ ବାହାର ଲୋକଙ୍କ ହାତକୁ ବ୍ୟବସାୟ, ବାଣିଜ୍ୟ ଚାଲିଯିବାକୁ ବସିଛି । ଚାକିରି କ୍ଷେତ୍ରରେ ଆମକୁ ମଧ୍ୟ ଆଉ କୌଣସି ଅତିରିକ୍ତ ସୁବିଧା ମିଳୁନାଇଁ । ଆପଣମାନଙ୍କ ଭଳି ଟୁରିଷ୍ଟମାନେ ହିଁ ମୋର ଏକମାତ୍ର ଭରସା । ପେଟ୍ରୋଲ ଦାମ୍ ହୁହୁ ବଢ଼ିଚାଲିଛି । ମଟର ସାଇକେଲ୍ ଚାଲୁ ରଖିବା ଖର୍ଚ୍ଚ ମଧ୍ୟ ବଢ଼ି ଯାଉଛି । ଭାବୁଛି, ଆଉ ଗୋଟାଏ କିଛି ବ୍ୟବସାୟ କରିବି । କିନ୍ତୁ ହାତରେ ମୂଳଧନ କିଛି ନାଇଁ । ସାହେବ ! ଆପଣଙ୍କ ପ୍ରଦେଶରେ କିଛି ଚାକିରି ଗୋଟାଏ ମିଳିଯାଇପାରିବ ?

ମେରିଓ ମୁହଁକୁ ଚାହିଁ ମୋ ନାସାରନ୍ଧ୍ରରୁ ଏକ ଉତପ୍ତ ଦୀର୍ଘଶ୍ୱାସ ନିର୍ଗତ ହୋଇଗଲା ।

ଏଇଭଳି ଅଜସ୍ର ଉଷ୍ମ ଦୀର୍ଘଶ୍ୱାସରେ ଭାରତବର୍ଷର ବାୟୁମଣ୍ଡଳ କେବଳ ଭାରାକ୍ରାନ୍ତ ହେବାରେ ଲାଗିଛି, କିନ୍ତୁ ସେ ଶ୍ୱାସର ଦୈର୍ଘ୍ୟ କିମ୍ୱା ଉଷ୍ମତା ହ୍ରାସ ପାଇନାହିଁ ।

ଏ ତ କେବଳ ଦୀର୍ଘଶ୍ୱାସର ଭାରତବର୍ଷ !

ମେରିଓ ହଠାତ୍ ଚମକିଉଠିଲା ଭଳି କହିଲା, ସାହେବ ! ରାତି ହୋଇଆସିଲାଣି । ଆପଣ ଆଉ କେଉଁଆଡ଼େ ବୁଲିଯିବେ ? ଗପ କରି ସମୟ ସବୁ ଅକାରଣରେ ଖର୍ଚ୍ଚ ହୋଇଗଲା !

ମୁଁ କହିଲି– ମୁଁ ଏଇ କଥାବାର୍ତ୍ତାରେ ଭାରି ଖୁସି । ଗୋଟିଏ ଅଞ୍ଚଳକୁ କେବଳ ତାର ନଦୀ, ସମୁଦ୍ରକୂଳ, ଗୀର୍ଜା, ମନ୍ଦିର ଦେଖି ବୁଝି ହୁଏନାଇଁ । ସେ ଅଞ୍ଚଳର ଲୋକଙ୍କ ସହିତ

ମିଶି ସେମାନଙ୍କ ସୁଖଦୁଃଖ ନିଜ ଭିତରେ ଅନୁଭବ କରିବାକୁ ହୁଏ । ତମ ମୁହଁରୁ ଗୋଆର ନିଜସ୍ୱ ସ୍ୱାଧୀନତା ଆନ୍ଦୋଳନର ଇତିହାସ ଶୁଣି ମୁଁ ବହୁତ ଆନନ୍ଦିତ । ପୁରୁଣା ଗୋଆ ସହରର ମାଟିରେ ସେଣ୍ଟ କ୍ୟାଥାରିନ୍ ଚ୍ୟାପେଲ୍ ଦେଖି ମୁଁ ଯେତିକି ଖୁସି, ତା'ଠାରୁ ବେଶୀ ଖୁସି ବହୁ ପ୍ରାଚୀନ କାଳରୁ ଗୋଆର ମୁକ୍ତିସଂଗ୍ରାମର କାହାଣୀ ଶୁଣି । ଅନେକଙ୍କର ଧାରଣା ଗୋଆବାସୀଙ୍କ ଅପେକ୍ଷା ଗୋଆ ବାହାର ଭାରତୀୟମାନେ ଆନ୍ଦୋଳନ କରି ଗୋଆକୁ ସ୍ୱାଧୀନ ଭାରତବର୍ଷରେ ମିଶାଇଛନ୍ତି ! ମୁଁ ବି ଦିନେ ଗୋଆ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାପାଇଁ ସତ୍ୟାଗ୍ରହୀ ହୋଇ ଆସିଥିଲି.....କିନ୍ତୁ ଗୋଆରେ ପ୍ରବେଶ କରିବା ଆଗରୁ ବେଲ୍‌ଗାଉଁ ପାଖରେ ପର୍ତ୍ତୁଗୀଜ୍ ପୋଲିସ୍‌ର ଲାଠି ଆଘାତ ଖାଇ ମତେ ଫେରିବାକୁ ହୋଇଥିଲା; ହେଲେ ମତେ ଜଣାନଥିଲା ସପ୍ତଦଶ ଶତାବ୍ଦୀରୁ ଗୋଆର ଲୋକେ ସ୍ୱାଧୀନତା ପାଇଁ ଲଢ଼େଇ କରିଆସୁଛନ୍ତି !

: ଆପଣ ବି ଦିନେ ଆମ ପାଇଁ ପର୍ତ୍ତୁଗୀଜ୍ ପୋଲିସ୍‌ର ଲାଠି ଖାଇଥିଲେ ! କି ଆଶ୍ଚର୍ଯ୍ୟ ! — ବାକ୍ୟ ଶେଷ କରିବା ମାତ୍ରେ ମେରିଓର ଦୁଇ ଆଖିର ଗହଳ ଭ୍ରୁପଲ୍ଲବ କୁଞ୍ଚିତ ହୋଇଗଲା ।

ମୁଁ ଧୀରେ ଧୀରେ ଉଠି ଠିଆହେଲି ।

ନିମ୍ନ ସ୍ୱରରେ ସ୍ୱଗତୋକ୍ତି କଲାଭଳି କହିଲି— ଏଥର ଫେରିବାକୁ ହେବ । ଚାଲ, ଯିବା ।

ମେରିଓ ତା'ର ମଟର ସାଇକେଲ୍‌ରେ ଷ୍ଟାର୍ଟ ଦେଲା ।





ଚିତ୍କାରଟା ଶୁଣି ମଧ୍ୟ ମୁଁ ପ୍ରଥମେ ବୁଝି ପାରି ନଥିଲି ।

ମେରିଓ ବୋଧହୁଏ କିଛି କେଉଁଠି କଅଣ ଗୋଟାଏ ଅଘଟଣ ଘଟିବାକୁ ଯାଉଛି ବୋଲି ଆଶଙ୍କା କରି ମଟର ସାଇକେଲ୍‌ର ଗତି ଖୁବ୍ କମାଇଦେଇଥିଲା ।

ଠିକ୍ ଏହି ସମୟରେ ମୁଁ ସେଇ ଅସ୍ପଷ୍ଟ, ଆତଙ୍କିତ ଆର୍ତ୍ତଚିତ୍କାରର ସ୍ପଷ୍ଟ ଶବ୍ଦମାଳା ଶୁଣିବାକୁ ପାଇଲି ।

Kill me.

It is better to die on your feet then live in your knees.

ତୋ କୋଳରେ ବଞ୍ଚିବା ଅପେକ୍ଷା ତୋ ପାଦତଳେ ମରି ଲୋଟିପଡ଼ିବା ଭଲ । ମାର୍ ମତେ ମାର୍......

ଏ ତ ସେଇ ମିସ୍ ଆମେରିକାର କଣ୍ଠସ୍ୱର ।

ସ୍ୱର ଯେ ଖୁବ୍ ଦୂରରୁ ଆସୁନାହିଁ ସେ କଥା ବୁଝିବାରେ ମୋର ବିଳମ୍ବ ହୋଇ ନଥିଲା ।

ମୁଁ କହିଲି– ମିଷ୍ଟର ସିଲଭା ! କେହି ଭଦ୍ରମହିଳା ବୋଧହୁଏ ବିପଦରେ ପଡ଼ିଛନ୍ତି । କେଉଁଠି ?

ମେରିଓ ମଟର ସାଇକେଲ୍‌କୁ ବାମ ଦିଗକୁ ଘୂରାଇନେବାମାତ୍ରେ ଅଳ୍ପ ଦୂରରେ ଏକ ନିଛାଟିଆ ପଡ଼ିଆ ମଝିରେ ଜଣେ ଅର୍ଦ୍ଧଉଲଗ୍ନା ନାରୀ ଏବଂ ଆଉ ଜଣେ କାମୁକ ପୁରୁଷର ଅସ୍ପଷ୍ଟ ମୂର୍ତ୍ତି ଆମ ଆଖି ସାମ୍ନାରେ ଝଲସିଉଠିଲା ।

କାମୁକ ପୁରୁଷଜଣକ ବୋଧହୁଏ ମଟର ସାଇକେଲ୍‌ର ଉଜ୍ଜ୍ୱଳ ଆଲୋକ ଦେଖି ହତଚକିତ ହୋଇପଡ଼ିଲା । ମେରିଓର ମଟର ସାଇକେଲ ତା'ପାଖରେ ପହଞ୍ଚିବା ଆଗରୁ ଛତ୍ରଭଙ୍ଗ ଦେଇ ସେ ଦୌଡ଼ିପଳାଇଲା ଏବଂ ଅଳ୍ପ ସମୟ ମଧ୍ୟରେ ଆମେ ନିକଟସ୍ଥ ଏକ ଗଛ ମୂଳେ ଠିଆହୋଇଥିବା ଏକ ଟାକ୍‌ସିର ଷ୍ଟାର୍ଟ ଦେବାର ଆବାଜ୍ ଶୁଣିବାକୁ ପାଇଲୁ ।

ମେରିଓ ସେ ଟାକ୍‌ସି ପଛରେ ମଟର ସାଇକେଲ ଦୌଡ଼ାଇବାକୁ ଚେଷ୍ଟା କରୁଥିଲା । ମୁଁ ବାରଣ କଲି । କାରଣ କୌଣସି ହିନ୍ଦୀ ଫିଲ୍ମର ରେପ୍‌ସିନ୍‌ର ନାୟିକାଭଳି ଯେଉଁ ବିଦେଶିନୀ ଜଣକ ତଟସ୍ଥ ହୋଇ ଠିଆହୋଇଥିଲା; ମତେ ଦେଖି ତା'ର ଆତଙ୍କିତ ମୁହଁରେ ହସର ଆଲୋଡ଼ନ ଦେଖାଦେବା ପରେ ତାକୁ ଉଦ୍ଧାର କରିବା ଆମର ପ୍ରଥମ କର୍ତ୍ତବ୍ୟ ବୋଲି ମୋର ମନେହୋଇଥିଲା ।

ସେଇ ହିପ୍‌ପିଣୀ !

: ହାଓ ଷ୍ଟ୍ରେଞ୍ଜ ! ଇଉ ଆର୍ ହିୟର ମିଷ୍ଟର ଅଙ୍କଲ୍ ?

ସେ କାମୁକ ପୁରୁଷଜଣକ ଟଣାଓଟରା କରି ହିପ୍‌ପିଣୀ ଫ୍ରକ୍ ଛିଡ଼ାଇଦେଇଥିଲା । ସମ୍ଭବତଃ ସେ ଅନ୍ୟ କୌଣସି ଅନ୍ତର୍ବାସ ପିନ୍ଧି ନଥିଲା । ତା'ର ଦୁଇଟି ନଗ୍ନ ନିଟୋଳ ସ୍ତନ ଅନାବୃତ ହୋଇ ଯାଇଥିଲା । ତା'ର ସେ ଛୋଟ ସ୍ତନବୃନ୍ତ ଦୁଇଟି ମନେହେଉଥିଲା ଢଳ ଢଳ ଦୁଇବିନ୍ଦୁ ଅଶ୍ରୁ ଭଳି ।

ମେରିଓ କହିଲା– ଆପଣ କଅଣ ସେ ଟାକ୍‌ସିରେ ଆସୁଥିଲେ ମାଡ଼ାମ୍ ! ଲୋକଟା କଅଣ ଟାକ୍‌ସି ଡ୍ରାଇଭର ? ମୁଁ ଦେଖିଛି ସେ ଟାକ୍‌ସିରେ ଲାଗିଛି ବମ୍ବେର ଲାଇସେନ୍‌ସ ନମ୍ବର । କୌଣସି ଗୋଆନିକ୍ ଟାକ୍‌ସିବାଲା କେବେହେଲେ ଏଭଳି ସଇତାନୀ କରିବେ ନାହିଁ । ଏଇ ବମ୍ବେବାଲାଙ୍କ ଯୋଗୁ ଗୋଆର ଟୁରିଜିମ୍ ଇଣ୍ଡଷ୍ଟ୍ରି ବଦ୍‌ନାମ ହେବାକୁ ବସିଛି । ଗୋଆବାସୀଙ୍କ ତରଫରୁ ଆପଣଙ୍କ ଉପରେ ହୋଇଯାଇଥିବା ଅତ୍ୟାଚାର ପାଇଁ ମୁଁ କ୍ଷମା ଭିକ୍ଷା କରୁଛି ।

ହିପ୍‌ପିଣୀ ସେତେବେଳକୁ ନିଜର ଦମ୍ଭ, ସାହସ ଫେରିପାଇଥିଲା ।

ସେ କହିଲା– ଆମେ ତିନିଜଣ ଆଜି ଟେମ୍ପଲ ଦେଖି ଯାଇଥିଲୁ । ସପ୍ତକୋଟେଶ୍ୱର ଟେମ୍ପଲ । ପଲ୍, ତା'ର ଫରାସୀ ଗାର୍ଲଫ୍ରେଣ୍ଡ ଆଉ ମୁଁ । ସେମାନେ ବାଟରେ ଓହ୍ଲାଇଗଲେ । ମୋର ପାଞ୍ଜିମ୍ ଫେରିବା କଥା । ଆପଣଙ୍କ ଟଙ୍କା ଶୁଝିବାକୁ ହେବ ତ ? ଟଙ୍କାଟା ଗୋଟାଏ ରାତି ମୋ ପାଖରେ ରହିଲେ ଖର୍ଚ୍ଚ ହୋଇଯିବ, ଏଇ ଭୟରେ ମୁଁ ସେମାନ୍‌ଙ୍କ ଅନୁରୋଧକୁ ଉପେକ୍ଷା କରି ପାଞ୍ଜିମ୍ ଫେରିବାକୁ ଜିଦ୍ କଲି । ଟଙ୍କାଟା ପଲ୍ ମତେ ଧାର୍ ଦେଇଛି । ଅବଶ୍ୟ ତା' ଉପରେ ମୋର ମଧ ଅନେକ ଧାର୍ ଟଙ୍କା ଜମା ଅଛି । କିନ୍ତୁ ଧାର୍ ନେଇଥିବା ଟଙ୍କା ଶୁଝିବା ବଦଳରେ ସେ ମତେ ଫିପ୍‌ଟି କଏନ୍‌ସ୍ ଧାର ଦେଲା । ପ୍ରକୃତରେ ଏ ବୁଦ୍ଧି ତା'ର ନୁହେଁ; ତା'ର ଗାର୍ଲ ଫେଣ୍ଡର । ହଁ, ମନେପଡ଼ିଲା ତା' ଗାର୍ଲଫ୍ରେଣ୍ଡର ବର୍ତ୍ତମାନ ନାମ ରାଧା । ହରଦ୍ୱାରଠାରେ ଜଣେ ଗୁରୁ ତାକୁ ଦୀକ୍ଷା ଦେଲାବେଳେ ଏ ନାମ ଲୁଆଡ଼େ ଦେଇଛନ୍ତି । ଭାରି ସୁଇଟ୍ ଇଣ୍ଡିୟାନ୍ ନାମ । ନା ? କିନ୍ତୁ ଝିଅଟା ଖୁବ୍ ବେଶୀ ପଜେସିଭ୍ । ଗୋଟାଏ ମୁହୂର୍ତ୍ତ ସେ ପଲ୍‌କୁ ମୁକ୍ତି ଦେବାକୁ ଚାହେଁନାହିଁ । ସେଥିପାଇଁ ରାତିଟା ସେମାନଙ୍କ ସହିତ କଟାଇବା ପାଇଁ ଆମନ୍ତ୍ରଣ କରିଥିଲେ ସୁଦ୍ଧା ମୁଁ ସେମାନଙ୍କ ସହିତ ରହିବାକୁ ଚାହିଁଲି ନାହିଁ ପଲ୍‌ର ଗାର୍ଲଫ୍ରେଣ୍ଡ୍ ସହିତ ମୋର ଝଗଡ଼ା ମଧ ହୋଇଗଲା । ମୁଁ ଯେ ଆପଣଙ୍କଠାରୁ ଚାଳିଶ ଟଙ୍କା ଧାର୍ କରିଛି; ଏବଂ ସେ ଟଙ୍କା ଶୁଝିବା ମୋର ନିହାତି ଦରକାର, ସେ କଥା ରାଧା ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ । ଅଥଚ କାଠମାଣ୍ଡୁ ଗଲାବେଳେ ପଲ୍ ମୋଠାରୁ ଟୁ ହଣ୍ଡ୍ରେଡ୍ କଏନ୍‌ସ

ଧାର୍ ନେଇଥିଲା ।

ଝିଅଟା ଅନର୍ଗଳ କଥା କହି ଚାଲିଥିଲା । ବରଫ ଭଳି ତା'ର ଶୁଭ୍ର ସ୍ତନ ଯେ ଅନାବୃତ; ସେ କଥା ଖିଆଲ ନାହିଁ । ମେରିଓ ଆମ ଦୁଇଜଣଙ୍କ କଥାବାର୍ତ୍ତା ମଝିରେ ମୁଣ୍ଡ ନ ପୂରାଇ ଅଳ୍ପ ଦୂରରେ ତା' ମଟର ସାଇକେଲ୍ ଉପରେ ଉହୁଁକିପଡ଼ି ଗୋଟାଏ ଅଦ୍ଭୁତ ଭଙ୍ଗୀରେ ସିଗାରେଟ୍ ପିଉଛି ଏବଂ ମଝିରେ ମଝିରେ ତୀର୍ଯ୍ୟକ ଦୃଷ୍ଟିରେ ହିପ୍‌ପିଣୀର ନଗ୍ନ ବୁକୁର ସୌନ୍ଦର୍ଯ୍ୟ ଉପଭୋଗ କରୁଅଛି ।

ମୁଁ ଅଗତ୍ୟା ହିପ୍‌ପିଣୀକୁ ଉପଦେଶ ଦେଲି– ଫ୍ରକ୍‌ଟା ପିନ୍ଧିନିଅ ।

ମୋର ଏଇ ଆଦେଶକୁ ସେ ଯେପରି ଅପେକ୍ଷା କରିଥିଲା ।

ଅଳ୍ପ ଛିଡିଯାଇଥିବା ଫ୍ରକ୍‌କୁ ଦେହରେ ଘୋଡ଼ାଇ ଦେଇ ସେ ତା'ର କର୍ତ୍ତବ୍ୟ ଶେଷ କରିଦେଲା । ତା'ପରେ ପୁଣି ଗଳ୍ପ ଆରମ୍ଭ କରିଦେଲା– ଟାକ୍‌ସିବାଲା ମତେ ଏକାକିନୀ ପଛ ସିଟ୍‌ରେ ବସିଥିବା ଦେଖି ଗୋଟାଏ ସିଗାରେଟ୍ ଅଫର୍ କଲା । ଲାଇଟର୍‌ରେ ସିଗାରେଟ୍‌ରେ ନିଆଁ ଧରେଇ ଦେଲାବେଳେ ଏମିତି ହିରୋ ମାର୍କା ଏକ ହସ ହସିଲା ଯେ ମୁଁ ଘାବରେଇଗଲି । ସେତେବେଳକୁ ଟାକ୍‌ସି ମେନ ରୋଡ଼ ଧରିଆସୁଥିଲା । ସେ ସିଗାରେଟ୍ ଭିତରେ ଟବାକୋ ବଦଳରେ ଗ୍ରାସ୍ ଥିଲା । ପ୍ରଥମ ଢୋକ ଧୂଆଁ ଗିଳି ସାରିଲା ପରେ ସେ ଲୋକଟାର ହିରୋମାର୍କା ହସ ମତେ ଖୁବ୍ ବିପଜ୍ଜନକ ମନେ ହୋଇନଥିଲା । ତେଣୁ ସେ କେତେବେଳେ ମେନ୍ ରୋଡ୍ ଛାଡ଼ି ଏଇ ନିଛାଟିଆ ଖୋଲା ଜାଗାକୁ ଗାଡ଼ି ନେଇ ଆସିଛି, ମୁଁ ଖିଆଲ ରଖି ପାରି ନାହିଁ । ସେ ଯେତେବେଳେ ନିଜ ମାଂସପେଶୀ ଦେଖାଇ ମତେ ଭୋଗ କରିବାକୁ ଚାହିଁଲା, ଆଇ ଫେଲ୍‌ଟ ସିକ୍...

ମୁଁ ଜଣେ ଉଦ୍ଧାରକର୍ତ୍ତା ଦେବପୁରୁଷ ଭଳି ମୁଖଭଙ୍ଗୀ କରି ପଚାରିଲି– ଆମେ ଯଦି ଠିକ୍ ସମୟରେ ପହଞ୍ଚି ନ ଥାନ୍ତୁ, କଅଣ ହୋଇଥାଆନ୍ତା ?

: ଗୋଟାଏ ରେପ୍‌ସିନ୍ ଏ ନିର୍ଜନ ଅନ୍ଧକାରରେ ପୁନରାବୃତ୍ତି ହୋଇଥାଆନ୍ତା । ଆଉ ଅଧିକ କଅଣ ? – ବିଦେଶିନୀ ଉତ୍ତର ଏପରି ଶୀତଳ ଭାବରେ ମୋ ଉପରକୁ ଫିଙ୍ଗିଦେଲା ଯେ ମୋ ଉଦ୍ଦୀପନାର ନିଆଁ ଦପ୍‌କିନି ଲିଭିଗଲା ।

ମେରିଓ ମୋ ପାଇଁ, ଆମ ପାଇଁ ତା'ର ଅନେକ ସମୟ ଅକାରଣରେ ଖର୍ଚ୍ଚ କରି ସାରିଥିଲା । ତାକୁ ଫେରିବାକୁ ହେବ ।

ମୁଁ ତାକୁ ପାଖକୁ ଡାକି କହିଲି– ଏ ବିଦେଶିନୀକୁ ସାଙ୍ଗରେ ନେଇ ମତେ ପାଞ୍ଜିମ୍ ଫେରିବାକୁ ପଡ଼ିବ । ସେଥିପାଇଁ ଗୋଟାଏ ଟାକ୍‌ସି ଲୋଡ଼ା । ଠିକ୍ ?

ସେ ମୁଣ୍ଡ ହଲାଇ ମନାକଲା ।

: ଆପଣ ଦୁଇଜଣ ମୋ ପଛରେ ମଟର ବାଇକ୍‌ରେ ଆରାମରେ ବସିପାରିବେ । ସେଥିପାଇଁ ଟାକ୍‌ସି ଡାକିବା କଅଣ ଦରକାର ? ଆଉ ଏ ରାସ୍ତାରେ ଟାକ୍‌ସି ମଧ୍ୟ ମିଳିବା କଷ୍ଟ– ମେରିଓ ନିଜର ମତାମତ ଜଣାଇ ସାରି ଗାଡ଼ି ଷ୍ଟାର୍ଟକଲା ।

ଆମେ ପାଞ୍ଜିମ୍‌ରେ ପହଞ୍ଚିଲା ବେଳକୁ ବେଶି ରାତି ହୋଇଯାଇଥିଲା । ମେରିଓଙ୍କୁ ତାର ପ୍ରାପ୍ୟ ଭଡ଼ା ଟଙ୍କା ସହିତ ଆନ୍ତରିକ ଧନ୍ୟବାଦ ଜଣାଇ ବିଦାୟ ଦେଇଦେଲି ।

ତା'ପରେ ସେଇ ହିପ୍‌ପିଣୀ !

: ତମେ କୁଆଡ଼େ ଯିବ ? – ମୁଁ ପ୍ରଶ୍ନ କଲି ।

ସେ ତା'ର ଦୁଇ ଚିଲା ଆଖିରେ ମତେ ଜଳ ଜଳ କରି ଅନେଇ ରହିଲା କିଛି କ୍ଷଣ । ତା'ପରେ କହିଲା– ଯିବି କୁଆଡ଼େ ? ପଲ୍ ଆଉ ତା'ର ବାନ୍ଧବୀର ଆମନ୍ତ୍ରଣ ଉପେକ୍ଷା କରି ତ ଆପଣଙ୍କ ପାଖକୁ ଆସିଲି ! ଆପଣଙ୍କ ହୋଟେଲ ରୁମ୍‌ରେ ଗୋଟାଏ ଖଟ; ମୁଁ ତଳେ ବିଛଣା ବିଛାଇ ଶୋଇଯିବି । ଆଜି ରାତିରେ ମୁଁ ଏକାକିନୀ ରହିବାକୁ ଚାହେଁନା । ସେଇ କାମୁକ ଡ୍ରାଇଭରର କ୍ଷୁଧିତ ଦୃଷ୍ଟି ମତେ ଏ ପର୍ଯ୍ୟନ୍ତ ସୁଦ୍ଧା ଅନୁସରଣ କରୁଥିବା ଭଳି ମନେହେଉଛି ।

: କୌଣସି ନାରୀ ସହିତ ଗୋଟିଏ କୋଠରିରେ ରାତ୍ରିଯାପନ କରିବାରେ ମୋର ଆପତ୍ତି ନଥାଇପାରେ; କିନ୍ତୁ ତମେ ଜଣେ ପୁରୁଷର କାଳ୍ପନିକ କ୍ଷୁଧିତ ଦୃଷ୍ଟିକୁ ଭୟ କରି ଆଉ ଜଣେ ପୁରୁଷ ସହିତ ଗୋଟିଏ କୋଠରିରେ ନିର୍ଭୟରେ ଶୋଇ ପାରିବ କିପରି ? ତମେ କଅଣ ଜାଣନା ସୁବିଧା ପାଇଲେ ସବୁ ପୁରୁଷ ପଶୁହୋଇଯାଆନ୍ତି ! – ମୁଁ ପ୍ରଶ୍ନ କରି ବିସ୍ମୟରେ ତା'ଆଡ଼କୁ ଚାହିଁରହିଲି ।

ବିଦେଶିନୀ ଏଥର ଖୁବ୍ ମାପିଚୁପି ହସିଲା ।

କହିଲା– ମୋର ହରାଇବା ଭଳି କୌଣସି ସମ୍ପଦ ନାହିଁ । ପୁରୁଷକୁ ପଶୁ କଲାଭଳି ବନ୍ୟ ଯୌବନ ମଧ୍ୟ ନାହିଁ । ସଂସାରରେ ସବୁ ପୁରୁଷଙ୍କୁ ଭୟ କଲେ ଚଳେନାହିଁ । ବରଂ ବହୁ ଇତରପୁରୁଷ ପଶୁମାନଙ୍କ ହିଂସ୍ର ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ଜଣେ ଜଣେ ପୁରୁଷ ଉପରେ ବିଶ୍ୱାସ ରଖିବାକୁ ହୁଏ । ଠିକ୍ କହୁଛି ନା ?

ରାସ୍ତା ଉପରେ ଠିଆହୋଇ ଆଉ ଗପ କରିବାର କିଛି ମାନେହୁଏନା । ମୁଁ ସେତେବେଳକୁ କ୍ଷୁଧାର ତାଡ଼ନା ମଧ୍ୟ ଅନୁଭବ କରୁଥିଲି । ମୋ ମଧ୍ୟ କେମିତି ଏକ ଧାରଣା ହୋଇଯାଇଥିଲା ଗୋଆ ଭ୍ରମଣ ସହିତ ଏହି ଅନାତ୍ମୀୟା ବିଦେଶିନୀ ମୋର ଭାଗ୍ୟ ସହିତ ଜଡ଼ିତ ହୋଇଯାଇଛି । ଇଚ୍ଛା କଲେ ମଧ୍ୟ ମୁଁ ତାକୁ ଏଡ଼ାଇ ଯାଇ ପାରିବିନାହିଁ ।

ଅଳ୍ପ ଦୂରରେ "ଶେର-ଇ-ପଞ୍ଜାବୀ" ଏକ ପରିଚ୍ଛନ୍ନ ଭୋଜନାଳୟ ।

ମୋ ସହିତ ସେ ହିପ୍‌ପିଣୀ ମଧ୍ୟ ସେଠାରେ ମୋ ଟେବୁଲ୍ ପାଖରେ ବସିଲା ।

ମୁଁ ଖାଦ୍ୟ ପାଇଁ ବରାଦ କଲାବେଳେ କହିଲା, ମୋ ପାଇଁ ଏତେ ମଗାନ୍ତୁ ନାହିଁ । ଗୋଟାଏ ଚିକେନ୍ ସୁପ୍, ଦୁଇଖଣ୍ଡ ରୁଟି, ଗୋଟାଏ ଅଣ୍ଡାର ତରକାରି ଆଉ ସାଲାଡ୍ ! ବାସ୍ ।

ଖାଇବା ବିଷୟରେ ଝିଅଟା ଖୁବ୍ ସଂଯତ । ଖାଇବାରେ ତା'ର କିଛି ଯେମିତି ଆନନ୍ଦ ନାହିଁ; କେବଳ ପ୍ରୟୋଜନ ପାଇଁ ସେ ଖାଏ ।

: ସେ ଡ୍ରାଇଭର କଅଣ ଛୁରି ଦେଖାଇ ତମକୁ ରେପ୍ କରିବାକୁ ଚେଷ୍ଟା କରୁଥିଲା ?

କଣ୍ଟାରେ ସାଲାଡ୍ ପ୍ଲେଟ୍‌ରୁ ଖଣ୍ଡେ ଗାଜର୍ ଉଠାଇ ନେଉ ନେଉ ସେ ଉତ୍ତର ଦେଲା– ହଁ, ଛୁରି; ଯେଉଁଥିରେ କୁକୁଡ଼ା ମାଂସ କଟାଯାଏ । କିନ୍ତୁ ମୁଁ ଜାଣିଥିଲି ରେପ୍ କରିବାକୁ ଚାହୁଁଥିଲେ ବି ସେ ମର୍ଡର କରିବାର ଝୁଙ୍କ୍ ନେବାକୁ ଚାହୁଁ ନଥିଲା । ତା'ଦେହ ଗୋଟାସୁଦ୍ଧା ଥରୁଥିଲା । ଗୋଟାଏ ଭୀରୁ, କାପୁରୁଷ ! ଗୋଟାଏ କାଓ୍ୱାର୍ଡ଼ ଦ୍ୱାରା ଧର୍ଷିତା ହେଲାବେଳେ କୌଣସି ନାରୀ କେବେ କିଛି ଏ ଯୌନ ଆବେଗ ଅନୁଭବ କରେନା । ବରଂ ଏକ ରିପାଲ୍‌ସିଭ୍ ଭାବରେ ମନ ଭରିଯାଏ । ଲୋକଟାର ଆଖିରେ ଲୋଭର ନିଆଁ ଆଉ ଦେହର କାପୁରୁଷର ଦୁର୍ବଳତା ଦେଖି ମୁଁ ତୀବ୍ର ପ୍ରତିବାଦ କରିଥିଲି । ମୋ ଚିତ୍କାର ସେଥିପାଇଁ ଆପଣ ଶୁଣିପାରିଲେ ।

କଣ୍ଟାରେ ଗାଜର ଖଣ୍ଡକ ନେଇ ସେ ପାଟିରେ ଭର୍ତ୍ତି କରିଦେଲା ।

ପପ୍ ମିଉଜିକ୍‌ର ରେକର୍ଡ ବାଜୁଥିଲା । ମୁଁ ସେତେବେଳକୁ କେଜାଣି କାହିଁକି ସେ ବିଦେଶିନୀ ସମ୍ପର୍କରେ ଭୀଷଣ କୌତୂହଳୀ ହୋଇପଡ଼ିଥିଲି । ମନେହେଉଥିଲା, ଏ ହିପ୍‌ପିଣୀ ସମ୍ଭବତଃ ଅନେକ ନାଟକୀୟ ଗଳ୍ପର ଖଣି । ଟିକିଏ ଯତ୍ନ କଲେ ଗୋଟାଏ ଦୁଇଟା ଛୋଟ ଗଳ୍ପର ଉପାଦାନ ନିଃସନ୍ଦେହରେ ଅଳ୍ପ ସମୟ ମଧ୍ୟରେ ମିଳିଯାଇପାରେ ।

: ତମର ରେପ୍ ସମ୍ପର୍କରେ କୌଣସି ପ୍ରତ୍ୟକ୍ଷ ଅଭିଜ୍ଞତା ଅଛି ?– ମୋ ପ୍ରଶ୍ନ ମୋ ନିଜ କାନକୁ ହିଁ କିଭଳି ନିର୍ବୋଧ ନିର୍ବୋଧ ଶୁଣାଗଲା ।

ବିଦେଶିନୀ ଉତ୍ତରଦେଲା– ଆପଣ ନିଶ୍ଚୟ ଆଶା କରନ୍ତି ଯେ ମୁଁ କୌଣସି ବୟସ୍କ ଲୋକଦ୍ୱାରା ଧର୍ଷିତା ହୋଇ ମୋର ପ୍ରଥମ ଯୌନ ଅଭିଜ୍ଞତା ହାସଲ କରିଥିଲି । ଆମେରିକାନ୍ ଲାଇଫ୍ ସମ୍ପର୍କରେ ଏଭଳି ଅନେକ ଭୁଲ୍ ଧାରଣା ଏ ଦେଶରେ ପ୍ରଚଳିତ ଥିବା ମୁଁ ଶୁଣିଛି । ନିଉୟର୍କ କଥା ମୁଁ କହିପାରିବିନି, କିନ୍ତୁ ଲସ୍‌ଏଞ୍ଜେଲସରେ କେହି ବଳାତ୍କାର କରିବା ଆଗରୁ ଯେକୌଣସି ଭର୍ଜିନ୍ ନିଜର ମନୋମତ ପୁରୁଷ ପାଖରେ ନିଜକୁ ସମର୍ପଣ କରିଦେବାର ଯଥେଷ୍ଟ ସୁବିଧା ଅଛି ।

ମୁଁ କ୍ଷମା ପ୍ରାର୍ଥନା କରୁଥିବା ଭଳି ବିନମ୍ର କଣ୍ଠରେ କହିଲି– ଭାରତବର୍ଷ ଛାଡ଼ି ମୁଁ ବିଦେଶ ଯାଇନି । ଆମେରିକା ସମ୍ପର୍କରେ ମୋର ଧାରଣା ଆଉ ଆଗ୍ରହ– ଦୁଇଟାଯାକ କମ୍ । ଆମେରିକାର ନାରୀମାନଙ୍କ ସମ୍ପର୍କରେ ମୋର କୌଣସି ଧାରଣା ହିଁ ନାହିଁ । ମୁଁ ଯଦି ଏଭଳି ଏକ ପ୍ରଶ୍ନ ପଚାରି ଆଘାତ କରିଥାଏ, ମନରେ କିଛି ଭାବନାଇଁ ।

ହିପ୍‌ପିଣୀ ଆଶ୍ଚର୍ଯ୍ୟ ହେଲାଭଳି ମୁଖ ଭଙ୍ଗୀ କରି କହିଲା– ଆମେରିକା ସମ୍ପର୍କରେ ଆଗ୍ରହ ନାହିଁ; ଏକଥା ମୁଁ ପ୍ରଥମେ ଜଣେ ଭାରତୀୟଠାରୁ ଶୁଣିଲି । ଆମେରିକାର ଐଶ୍ୱର୍ଯ୍ୟ ଆଉ ତା'ର ଧ୍ୱଂସକାରୀ ଯୁଦ୍ଧ ମେସିନ୍ ସମ୍ପର୍କରେ ପ୍ରାୟ ସବୁ ଶିକ୍ଷିତ ଭାରତୀୟମାନଙ୍କଠାରେ ମୁଁ ସମାନ ଆଗ୍ରହ ଲକ୍ଷ୍ୟ କରିଛି । କେହି ମୁଗ୍ଧ-ଚକିତ ଦୃଷ୍ଟି, କେହି ଅବା ଘୃଣ-କଣ୍ଟକିତ ମନ ନେଇ ଆମେରିକା ଆଡ଼କୁ ଅନେଇ ରହିଛନ୍ତି; କିନ୍ତୁ ଆପଣ ତା'ର ଏକ ବିରଳ-ବ୍ୟତିକ୍ରମ । ନା ?

ମୋର ଫ୍ରାଇଡ୍ ରାଇସ୍ ଆଉ ଚିକେନ୍ ମସଲା ଆସିଯାଇଥିଲା । ମୁଁ ଖାଇବାରେ ମନଦେଲି ।

ବିଦେଶିନୀ କିନ୍ତୁ ଆମେରିକାର ନାରୀ ଜୀବନ ସମ୍ପର୍କରେ ମତେ ଜ୍ଞାନ ବିତରଣ କରିବାରୁ ବିରତ ହେଲା ନାହିଁ ।

: ଆମେରିକାନ୍ ଲଳନାମାନଙ୍କର ପ୍ରତିଦିନ ପ୍ରଥମ କାର୍ଯ୍ୟ ହେଲା ଜଣେ ମନଲାଖି ପୁରୁଷ ସହିତ ବନ୍ଧୁତ୍ୱ, ଦ୍ୱିତୀୟ କାର୍ଯ୍ୟ ଅଧ୍ୟୟନ, ତୃତୀୟ ଆହାର, ଚତୁର୍ଥ ନିଦ୍ରା । ଆଜିକାଲି ନୂଆ ନିୟମ ହୋଇଛି ପୁଅମାନେ ଝିଅମାନଙ୍କ ହଷ୍ଟେଲ ବା ଡର୍ମେଟରିରେ ରାତି ବାରଟା ପର୍ଯ୍ୟନ୍ତ ରହିପାରିବେ । ତେଣୁ ମଧ୍ୟରାତ୍ରି ପର୍ଯ୍ୟନ୍ତ ପୁରୁଷ ବନ୍ଧୁମାନଙ୍କ ସହ ଘନିଷ୍ଠ ହେବାରେ ସେମାନଙ୍କର ସବୁ ଏନାର୍ଜି ଖର୍ଚ୍ଚ ହୋଇଯାଏ । ବୁଝିପାରୁଛନ୍ତି ତ, ଏମାନଙ୍କ ମଧ୍ୟରୁ କେହି ରେପିଷ୍ଟ ନୁହନ୍ତି ! – ବିଦେଶିନୀ ମୋ ଆଡ଼କୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁ ରହିଲା ।

ଡାଇନିଂ ସ୍ପେସ୍ ତୁଳନାରେ ଶେର୍-ଇ-ପଞ୍ଜାବୀରେ କ୍ଷୁଧିତ ଗ୍ରାହକମାନଙ୍କ ସଂଖ୍ୟା ବେଶୀ । ଟୁରିଷ୍ଟ୍ ସିଜନ୍ । ଅନେକ ଲୋକ ଅପେକ୍ଷା କରିଛନ୍ତି । ଟେବୁଲ୍ ଖାଲିହେଲେ ସେମାନେ ବସିବେ । କିନ୍ତୁ ହିପ୍‌ପିଣୀର ଗପ କରିବାରେ ମନ, ଖାଇବାରେ ଆଗ୍ରହ ନାହିଁ । ହୁଏତ ଧୂଆଁ ଗିଳି ଗିଳି ଖାଇବା ଶକ୍ତି ସେ ହରାଇ ସାରିଲାଣି ।

ପରିଚାରକ ଆଉ କଅଣ ଦରକାର ବୋଲି ଦୁଇଥର ପଚାରିଗଲାଣି । ଚଞ୍ଚଳ ଚଞ୍ଚଳ ଟେବୁଲ୍ ଖାଲି କରିଦେବାପାଇଁ କହି ମୁଁ ହିପ୍‌ପିଣୀର ଦୃଷ୍ଟି ଅପେକ୍ଷମାଣ ଗ୍ରାହକମାନଙ୍କ ପ୍ରତି ଆକର୍ଷଣ କଲି ।

ବିଲ୍ ପେମେଣ୍ଟ ସାରି ରାସ୍ତାକୁ ଓହ୍ଲାଇଆସିଲା ବେଳକୁ ଝିଅଟା ଚୁପ୍‌ଚାପ୍ ନିର୍ଜନ ମନେହେଲା । ପାଟିରେ କଥା ନାହିଁ, ଚାଲିବାର ଗତିରେ ବେଗ ନାହିଁ, ମୁହଁରେ ଆବେଗ ନାହିଁ ।

ତା'ର ଏ ଷ୍ଟାଚ୍ୟୁ-ଲାଇକ୍ ନୀରବତା ମୋର ଅସହ୍ୟ ମନେହେଲା ।

: ଭାରି ଚୁପ୍‌ଚାପ । କଅଣ ଭାବୁଛ ?

ସେ ତା'ର ହିପ୍-ପକେଟରୁ ଗୋଟାଏ ସିଗାରେଟ୍ ବାହାର କରି ନିଆଁ ଧରେଇଲା ।

ତା'ପରେ ଖୁବ୍ ନିମ୍ନକଣ୍ଠରେ କହିଲା– ଡ୍ରଗ୍‌ସ୍ ପରେ ସେକ୍‌ସ ହିଁ ଜୀବନରେ କିଛିଟା ଉତ୍ତେଜନା ଆଣିଦିଏ । ସିଗାରେଟ୍‌ର ଭୁକ୍ତାବଶେଷ ଭଳି ସେଥିପାଇଁ ଅନେକ ପୁରୁଷଙ୍କୁ ମୁଁ ଭୋଗ କରି ଉଚ୍ଛିଷ୍ଟାଂଶ ପରି ପଛରେ ଛାଡ଼ି ଦେଇଆସିଛି; କିନ୍ତୁ ଯୌନମିଳନ ହରାଇ ବସିଛି ମୋ ସ୍ନାୟୁଗ୍ରନ୍ଥୀକୁ ଉତ୍ତେଜିତ କରିବାର ଶକ୍ତି । ଗୋଟିଏ ପୁରୁଷ ଦେହକୁ ଭୋଗ କରିବା କିମ୍ବା କୌଣସି ପୁରୁଷର ଲାଳସା ବହ୍ନିରେ ନିଜକୁ ସମର୍ପଣ କରିଦେବାରେ ଆଜିକାଲି ସେଭଳି କିଛି ଉତ୍ତେଜନାର ଉଷ୍ମତା ମିଳେନାଇଁ । ମିଷ୍ଟର ମୋଗଲ ଏମ୍ପରାର୍ ! ମନେହେଉଛି ପୃଥିବୀଟା ଯେପରି ଶୀତଳ ହୋଇଆସୁଛି । ସୂର୍ଯ୍ୟ ଉପରେ ବରଫ ଜମିଯାଇଛି । ଆଉ କୌଣସି ଉତ୍ତେଜନା ନାହିଁ; କିଛି ଉତ୍ତାପ ନାହିଁ । ବଞ୍ଚିବାର କିଛି ଅର୍ଥ ନାହିଁ । ମୁଁ ଠିକ୍ କହୁଛି ନା ?

ଝିଅଟା ମତେ ମୋଗଲ ସମ୍ରାଟ ବୋଲି କାହିଁକି ସମ୍ବୋଧନ କଲା ମୁଁ କିଛି ବୁଝିପାରିଲି ନାହିଁ । ତା'ର ସେ ପାପର ସ୍ୱୀକାରୋକ୍ତି ଆଉ ଉତ୍ତାପ-ବିହୀନ ଜୀବନର ଆର୍ତ୍ତ ଆକୂତି ଶୁଣି ମୁଁ ଚମକିପଡ଼ି ପଛକୁ ଫେରି ତା'ଆଡ଼କୁ ଚାହିଁଲି ।

ସେଇ ପ୍ରସ୍ତର ମୂର୍ତ୍ତିଭଳି ନିଷ୍ପ୍ରାଣ ନିର୍ଜନତାରେ ତା'ର ସାରା ମୁହଁ ଆଚ୍ଛନ୍ନ ହୋଇଯାଇଛି ।





: ଆପଣ ତ ଆମ ଭଳି ଗୃହତ୍ୟାଗୀ ହିପ୍‌ପି ନୁହନ୍ତି । ଆପଣଙ୍କର କୌଣସି ନିଶା ମଧ୍ୟ ନାହିଁ । ତେବେ ଆପଣଙ୍କର ପେଷା କ'ଣ ? ଆଇ ମିନ୍ ଅକୁପେସନ୍... । ବିଦେଶିନୀ ଉତ୍ସୁକ ଦୃଷ୍ଟିରେ ଚାହିଁ ମତେ ପ୍ରଶ୍ନକଲା ।

ପାଞ୍ଜିମ ସହରରେ ସେତେବେଳକୁ ଯାନବାହନ ଚଳପ୍ରଚଳ ଆରମ୍ଭ ହୋଇଯାଇଛି । ରାତ୍ରିର ନିଃଶବ୍ଦ ନିର୍ଜନତା ଅତିକ୍ରାନ୍ତ । ହାତଘଣ୍ଟାରେ ସକାଳ ପାଞ୍ଚଟା ପଚିଶ । ସକାଳର ହଳଦିଆ ରଙ୍ଗର ଉଷ୍ମ ଖରା କାଚ ଝରକାର ପରଦା ଅଠାଭଳି ଲାଗିଯାଇଛି ।

ମୋ ଆଖିରୁ ସେତେବେଳ ପର୍ଯ୍ୟନ୍ତ ନିଦ୍ରାର ଜଡ଼ତା କଟିନଥିଲା । ହିପ୍‌ପିଣୀ ପାଇଁ ଆଉ ଗୋଟାଏ ଶୋଇବା ଘର ବ୍ୟବସ୍ଥା କରି ମୁଁ ଅନେକ ରାତ୍ରିରେ ଶୋଇଥିଲି । ସକାଳୁ ସକାଳୁ ମୋ ବନ୍ଦ ଘରର ଦରଜାରେ ତା' ହାତର ଆଙ୍ଗୁଠିର ଟିପା ଶବ୍ଦ ଶୁଣାଗଲା । କବାଟ ଖୋଲି ଦେଖେ ତ ହିପ୍‌ପିଣୀ । ଗତ ରାତିରେ ତା'ର ହାତବ୍ୟାଗ ମୋ ରୁମ୍‌ରେ ସେ ଛାଡ଼ି ଦେଇଯାଇଥିଲା । ବ୍ୟାଗ ଭିତରେ ତା'ର ମରଳୁଆନା ସିଗାରେଟ ରହିଛି । ନିଜ ନ ଭାଙ୍ଗୁଣୁ ଧୂମପାନର ତୃଷାରେ କଣ୍ଠନଳୀ ତା'ର ଶୁଖିଯାଇଛି । ଅଦ୍ଭୁତ ନିଶା !

ମୁଁ କବାଟ ଖୋଲି ଦେଇ ପୁଣି ଶୋଇବାର ଚେଷ୍ଟାକରୁଥିଲି । ଠିକ୍ ଏତିକିବେଳେ ହିପ୍‌ପିଣୀର ଏଇ ଅଦ୍ଭୁତ ପ୍ରଶ୍ନ !

ମୁଁ ଆଖି ନଖୋଲି ଉତ୍ତରଦେଲି– ଏ ପ୍ରଶ୍ନ ତମେ ଅନେକ ଆଗରୁ କରିବା ଉଚିତ ଥିଲା– ପ୍ରଥମ ପରିଚୟ ସମୟରେ । ବର୍ତ୍ତମାନ ଜାଣି ଆଉ ଲାଭ କ'ଣ ? ବନ୍ଧୁତ୍ୱ ଯେତେବେଳେ ଘନିଷ୍ଠ ହୋଇସାରିଲାଣି...

ମୋର ଉତ୍ତର ଶୁଣି ହିପ୍‌ପିଣୀର ମୁହଁରେ ବିସ୍ମୟର ଛାୟାପାତ୍ ହେଲା ।

: ବନ୍ଧୁତ୍ୱ ହୋଇଛି, ଘନିଷ୍ଠତା ହୋଇନି । ମଣିଷ ମଧ୍ୟରେ ଆଜିକାଲି ସହଜରେ ସମ୍ପର୍କ ଗଢ଼ିଉଠେ; ଘନିଷ୍ଠତା ହୁଏନାହିଁ । ଘନିଷ୍ଠତା ମୁଁ ଆତ୍ମୀୟତା ଅର୍ଥରେ କହୁଛି । କୁହନ୍ତୁନା, ଆପଣ କି କାମ କରନ୍ତି ? ବ୍ୟବସାୟ ? ସରକାରୀ ଚାକିରି ଅଥବା ଅନ୍ୟ କିଛି । ଜାଣିବାକୁ ଭାରି ଇଚ୍ଛାହେଉଛି । ଅଥଚ ଇଣ୍ଡିଆକୁ ଆସିବା ପରେ କୌଣସି ଇଣ୍ଡିୟାନ୍ ସମ୍ପର୍କରେ ଜାଣିବା ପାଇଁ ମୋର ଆଗରୁ କେବେ ଏଭଳି ତୀବ୍ର ଇଚ୍ଛା ହୋଇନି ! – ହିପ୍‌ପିଣୀ ସରଳ ଭାବରେ ନିଜର କୌତୂହଳ ପ୍ରକାଶ କଲା ।

ମୁଁ କଲିଂବେଲ୍ ଟିପିଲି । କେହି ଆସିଲେ ନାହିଁ । ଏତେ ସକାଳୁ ପରିଚାରକମାନଙ୍କ ଡିଉଟି ସମୟ ବୋଧହୁଏ ଆରମ୍ଭ ହୋଇନି ।

: କଅଣ ଦରକାର ?

: କପେ ଗରମ ବେଡ୍ ଟି ।

: ବ୍ଲାକ୍ ଅର୍ ବ୍ରାଉନ୍ ?

: ବ୍ରାଉନ୍ । — ମୁଁ ସଂକ୍ଷେପରେ ଉତ୍ତରଦେଲି ଶୋଇ ଶୋଇ ।

ସେ ନିଜେ ଉଠିଯାଇ କାହାକୁ ଚା'ର ବରାଦ ଦେଇ ଆସିଲା । ତା' ପ୍ରଶ୍ନର ପୁନରାବୃତ୍ତି ।

: କହିଲେ ନାହିଁ ତ ଆପଣ କଅଣ କରନ୍ତି ?

: ସାରା ଭାରତବର୍ଷ ଘୂରିବୁଲେ । ସଞ୍ଚିତ ଅଭିଜ୍ଞତାକୁ ନେଇ ବହି ଲେଖେ । ଉପନ୍ୟାସ, ଭ୍ରମଣ କାହାଣୀ । ବାସ୍, ଚାରିଆଡ଼ ଘୂରିବୁଲିବା ମୋର ନିଶା, ବହି ଲେଖିବା ହେଲା ପେଷା ।

ମୋର ଉତ୍ତର ଶୁଣି ତା'ର ଭ୍ରୂ କୁଞ୍ଚିତ ହେଲା । କେଉଁ ଦୂର ପାହାଡ଼, ଗହନ ଅରଣ୍ୟ, ନୀଳ ସମୁଦ୍ରର ଡାକରେ ମୁଁ ଯେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଘୂରିବୁଲେ, ସେଇ ଅଭିଜ୍ଞତାର ପୁଞ୍ଜିକୁ ବିନିଯୋଗ କରି ବହି ଲେଖେ, ଏଇ ମୋର ପେଷା, ଏଇ ମୋର ନିଶା; ଏକଥା ସହଜରେ ତା'ର ବୋଧଗମ୍ୟ ହୋଇ ନଥିଲା ।

ସେ ବିସ୍ମୟ-ବ୍ୟାକୁଳ କଣ୍ଠରେ ପ୍ରଶ୍ନକଲା— ବାସ୍, ଆପଣଙ୍କୁ ଆଉ କିଛି କରିବାକୁ ହୁଏ ନାହିଁ ? ଆପଣ କଅଣ ଖୋଜିବା ପାଇଁ ଦେଶ ଦେଶାନ୍ତର ଘୂରିବୁଲନ୍ତି ? ବୁଲିବା ପାଇଁ ଟଙ୍କା ଆଣନ୍ତି କୁଆଡୁ ? ଆପଣ କଅଣ କେଉଁ ଦେଶୀୟ ରାଜ୍ୟର ରାଜକୁମାର ? ଶୁଣିଛି ଇଂରେଜ ଶାସନ କାଳରେ ମଧ୍ୟ ଭାରତବର୍ଷରେ ଶହ ଶହ ଦେଶୀ ରାଜ୍ୟ ଥିଲା । ସେମାନଙ୍କ ଘରେ ଥିଲା ଅନେକ ମୂଲ୍ୟବାନ ମଣିମୁକ୍ତା । ଅଏଲ୍ ରିଚ୍ ଆରବ ଶେଖ୍‌ମାନେ ଆଜିକାଲି ସୁଦ୍ଧା ସେଇ ମୂଲ୍ୟବାନ୍ ଜୁଏଲାରୀ କିଣିବା ପାଇଁ ଜାମ୍ବୋ ବିମାନରେ ଆସି ବମ୍ବେ ସାନ୍ତାକ୍ରୁଜ୍‌ରେ ଅବତରଣ କରନ୍ତି । ଆପଣ କଅଣ ସେଇଭଳି କୌଣସି ଧନୀଦେଶୀୟ ରାଜ୍ୟର ଭୂତପୂର୍ବ ରାଜକୁମାର ?

ବିଦେଶିନୀର କଥା ଶୁଣି ମୁଁ ହସିଉଠିଲି ।

କହିଲି— ତମର ଧାରଣା ସମ୍ପୂର୍ଣ୍ଣ ଭୁଲ । ମୁଁ ଜଣେ ସାଧାରଣ ମଧ୍ୟବିତ୍ତ । ମୋର ଉପନ୍ୟାସ, ଭ୍ରମଣକାହାଣୀ ଆମ ପ୍ରଦେଶରେ ବେଶ୍ ଭଲ ବିକ୍ରି ହୁଏ । ସେଇ ସୂତ୍ରରେ ଯାହା ରୟାଲିଟି ମିଳେ ସେଇ ଟଙ୍କାରେ ମୁଁ ବସ୍, ଟ୍ରେନ୍, ଷ୍ଟିମର୍ ଆଉ ବେଳେ ବେଳେ ବିମାନର ଇକନମି କ୍ଲାସ୍‌ରେ ଘୂରିବୁଲେ । ଶ୍ୱେତାଙ୍ଗିନୀ ! ଅଜଣାର ଆକର୍ଷଣ ମତେ ଚୁମ୍ବକ ଭଳି ଅହରହ ଟାଣେ । ଗୋଟିଏ ଜାଗାରେ ମୁଁ ସ୍ଥିର ହୋଇ ରହିପାରେ ନାହିଁ । ଜୀବନର କୌଣସି ସ୍ୱପ୍ନ ଦେଖା ସୁଖକୁ ଖୋଜିବାପାଇଁ ବରଫ ଢଙ୍କା ସମୁଚ୍ଚ ପାହାଡ଼, ଘନ ଘୋର ଅରଣ୍ୟାନୀ ମୁଁ ଘୂରି

ବୁଲେନାହିଁ । କେଉଁ ନାମ ଅଜଣା ଝରଣାର କୂଳରେ ବସି ଝରଣା ଜଳରେ ପାଦ ବୁଡ଼ାଇଲାବେଳେ ମୁଁ ଆତ୍ମବିସ୍ମୃତ ହୋଇଯାଏ । କେଉଁ ଘଞ୍ଚ ଅରଣ୍ୟ ମଧ୍ୟରେ ଏକ ଅଚିହ୍ନା ରଙ୍ଗୀନ୍ ଫୁଲ କେଉଁ ଗଛ ଡାଳରେ ଫୁଟିଥିବା ଦେଖିଲେ ମୁଁ ନିଜକୁ ନିଜେ ଭୁଲିଯାଏ । ଏଇ ଆତ୍ମ-ବିସ୍ମୃତି ପାଇଁ ମୋର ଭ୍ରମଣ । ଏଇ ଭ୍ରମଣର ବିଭ୍ରମ ମଧ୍ୟରେ ମୁଁ ନିଜକୁ ନୂଆ କରି ଚିହ୍ନିଯାଏ । ଭ୍ରମରେ ମୁଁ ଭ୍ରମଣ କରେନାହିଁ; ଭ୍ରମଣ ମଧ୍ୟରେ ହିଁ ମୋର ନିଜର ଭ୍ରମ ଦୂର ହୋଇଯାଏ ।

ଶେଷ ଆଡ଼କୁ ମୋର କଥାଗୁଡ଼ିକ ବୋଧହୁଏ ଏକ ଆଧ୍ୟାତ୍ମିକ ରହସ୍ୟରେ ଆଚ୍ଛାଦିତ ହୋଇଗଲା । ବିଦେଶିନୀ ସବୁ କଥା ବୁଝିପାରିଲା ନାହିଁ, କେବଳ ବିସ୍ମୟରେ ଏକ ଅସ୍ଫୁଟ ଶବ୍ଦ କରି କହିଲା– ଆପଣ ମଧ୍ୟ ଜଣେ ଆମ ଭଳି ହିପ୍‌ପି । ଆମ ଭଳି ସମାଜ ବିମୁଖ ନୀରବ ବିଦ୍ରୋହୀ । ଆପଣ ମଧ୍ୟ ଆମ ଭଳି ଯୁଦ୍ଧ ଚାହାନ୍ତି ନାହିଁ; ପ୍ରେମ କରିବାକୁ ଚାହାନ୍ତି । କେବଳ ତଫାତ୍ ଆମର ପୋଷାକପତ୍ରରେ । ନା ମିଷ୍ଟର ଇଣ୍ଡିୟାନ ମେଇଲର୍ !

: ଇଣ୍ଡିଆନ୍ ମେଇଲର୍ ?

: ହଁ, ଆପଣ ଆମେରିକାନ୍ ଔପନ୍ୟାସିକ ନରମାନ୍ ମେଇଲ୍‌ରଙ୍କ ଭାରତୀୟ ଅବତାର । ଆପଣ ନରମାନ୍ ମେଇଲର୍‌ଙ୍କ ଉପନ୍ୟାସ "Naked and the Dead" ପଢ଼ିଛନ୍ତି ? ତାଙ୍କର 'American dream' ? ମେଇଲରଙ୍କ ଆମେରିକାନ୍ ଡ୍ରିମ୍ କିନ୍ତୁ ଭିଏତନାମ ଯୁଦ୍ଧ ଭାଙ୍ଗି ଚୂର୍ଣ୍ଣବିଚୂର୍ଣ୍ଣ କରିଦେଲା । ଭିଏତନାମ୍ ଯୁଦ୍ଧ ସମ୍ପର୍କରେ ଗୋଟାଏ ବହି ଲେଖିବାକୁ ସେ ମେକଂ ନଦୀର କୂଳେ କୂଳେ ଅନେକ ଆମେରିକାନ୍ ସୈନ୍ୟଙ୍କ ମୃତ ଦେହ ଅତିକ୍ରମ କରି ଭିଏତନାମ୍‌ର ଗାଁ ଗହଳ ଘୂରିବୁଲିଥିଲେ । ଶେଷରେ ଆମେରିକାର ପ୍ରକୃତ ଟ୍ରାଜେଡି ସେ ଆବିଷ୍କାର କରିଥିଲେ ଚଳଚିତ୍ର ଅଭିନେତ୍ରୀ ମରଲିନ୍ ମନ୍‌ରୋଙ୍କ ଜୀବନ ଓ ମୃତ୍ୟୁ ମଧ୍ୟରେ । ସେ ଥିଲେ ମୋର ପ୍ରିୟ ଔପନ୍ୟାସିକ । ଆପଣଙ୍କ ମୁହଁରୁ ଆପଣଙ୍କ ନିଶା ଓ ପେଷା କଥା ଶୁଣିବା ମାତ୍ରେ ମୋର ତାଙ୍କରି କଥା ମନେପଡ଼ିଗଲା ।

କଥା ଶେଷ କରି ହଠାତ୍ ନୀରବ ହୋଇଗଲା ହିପ୍‌ପିଣୀ ।

ମୋ ଆଖିରୁ ତନ୍ଦ୍ରାର ପ୍ରଲେପ ଲିଭିଯାଇଥିଲା । ମୁଁ ଶଯ୍ୟା ଉପରେ ଉଠି ବସିଲି । ଶ୍ୱେତାଙ୍ଗିନୀର ଆଖିରେ ଏଭଳି ଏକ ନିରୁଦ୍‌ବିଗ୍ନ କରୁଣତାର ଛାୟା ଛଳ ଛଳ ହେଉଥିଲା, ଯାହା ମୋର ସେନ୍‌ସିଟିଭ୍ ନର୍ଭ ଉପରେ ଭୀଷଣ ଚାପ ପ୍ରୟୋଗ କଲା । ମନେହେଲା ପାଞ୍ଜିମ୍‌ର ଏଇ ଟୁରିଷ୍ଟ ଲଜ୍‌ରେ ବସି ସେ ଯେମିତି ଖୋଲା ଝରକା ଫାଙ୍କ ବାଟେ ଆମେରିକା ସମାଜ-ଜୀବନର ବିୟୋଗାନ୍ତକ ଦୃଶ୍ୟ ଦେଖିପାରୁଛି ।

ମୁଁ ତା'ର ଦୁଇ ଉଦାସୀନ ଆଖି ଡୋଳା ଉପରେ ଦୃଷ୍ଟି ନିବଦ୍ଧ କରି ପ୍ରଶ୍ନ କଲି– ତମେ ଏ ବୟସରେ ହଠାତ୍ ସମାଜ-ବିଦ୍ରୋହିଣୀ ହୋଇଉଠିଲ କାହିଁକି ? ଭିଏତନାମ ଯୁଦ୍ଧରେ ତମର ପ୍ରିୟପୁରୁଷ ହଠାତ୍ ନିରୁଦ୍ଦିଷ୍ଟ ହୋଇଯିବା ଯୋଗୁ କଅଣ ତମେ ଅତିଷ୍ଠ ହୋଇ ଉଠିଲ ?

ହିପ୍‌ପିଣୀ ଆଉ ଖଣ୍ଡେ ଗ୍ରାସ୍-ଭର୍ତ୍ତି ସିଗାରେଟ୍‌ରେ ନିଆଁ ଧରାଇ ଧୂଆଁ ପାନକଲା ।

ତା'ପରେ ଖୁବ୍ ଧୀରେ ଧୀରେ ଅସହ୍ୟ ଯନ୍ତ୍ରଣାରେ ସ୍ମୃତିଚାରଣ କରୁଥିବା ଭଳି କହିଲା– ଯେଉଁଦିନ ମରଲିନ୍ ମନ୍‌ରୋଙ୍କ ମୃତ ଦେହ ନିଜ ଆଖିରେ ମୁଁ ଦେଖିଲି, ସେଇଦିନ ମୁଁ ବୁଝିପାରିଥିଲି ଆମେରିକାରେ ମୁଁ ଜନ୍ମହୋଇଛି ଯନ୍ତ୍ରଣାର କାରାଗାରରେ ବନ୍ଦୀ ହେବାପାଇଁ । ଆମେରିକାର ବିପୁଳ ଐଶ୍ୱର୍ଯ୍ୟ ମତେ ଶାନ୍ତି ଦେଇ ପାରିବ ନାହିଁ । ଯେଉଁଥିପାଇଁ ଯେପରି ଭାବରେ ସବୁ ଐଶ୍ୱର୍ଯ୍ୟ ମଧ୍ୟରେ ଅତୁଳନୀୟ ଲୋକପ୍ରିୟତା ସତ୍ତ୍ୱେ ମରଲିନ୍ ମନ୍‌ରୋଙ୍କୁ ଆତ୍ମହତ୍ୟା କରିବାକୁ ହେଲା, ମତେ ମଧ ଦିନେ ସେଇଭଳି ଆତ୍ମହତ୍ୟା କରିବାକୁ ପଡ଼ିବ । ସେଇଦିନୁ ସେ ଯନ୍ତ୍ରଣାର କାରାଗାରରୁ ମୁକ୍ତି ପାଇଁ ମୁଁ ବିଦ୍ରୋହର ପତାକା ଧରି ବସ୍ତା ଉପରକୁ ଓହ୍ଲାଇ ପଡ଼ିଥିଲି । ସେଦିନ ଲସ୍‌ଏଞ୍ଜେଲସ୍, କାଲିଫର୍ଣ୍ଣିଆର ରାସ୍ତାରେ ରାସ୍ତାରେ ଅନେକ ବିଦ୍ରୋହୀ, ବିଦ୍ରୋହିଣୀଙ୍କ ଭିଡ଼ । ସେଇ ଭିଡ଼ ମଧ୍ୟରେ ମୁଁ ହଜିଗଲି । ସେଇ ଯେ ଥରେ ହଜିଯାଇଛି– ଯାଇଛି । ଆଉ ନିଜକୁ ଖୋଜି ପାଇନି ।

: ତମେ ମରିଲିନ୍ ମନରୋଙ୍କ ମୃତ ଦେହ ନିଜ ଆଖିରେ ଦେଖିଛ ?

: ହଁ, ମୁଁ ଥିଲି ଲସ୍‌ଏଞ୍ଜେଲସ୍‌ରେ ମନରୋଙ୍କ ପ୍ରତିବେଶିନୀ । ୧୯୬୨ ମସିହା ଅଗଷ୍ଟ ମାସ । ଏକ ରବିବାସରୀୟ ପ୍ରଭାତରେ ମା'ଙ୍କ ସହିତ ମୁଁ ଗୀର୍ଜାକୁ ଯାଉଥିଲି । ବାଟରେ ମରଲିନ୍ ମନ୍‌ରୋଙ୍କ ଘର ସାମ୍ନାରେ ଭିଡ଼ ଦେଖି ପାଦ ମୋର ଅଟକିଗଲା । ସେଦିନ କେତେ ଅବା ମୋର ବୟସ ? ମୁଁ ଥିଲି ସେଦିନ ଚଉଦ ପନ୍ଦର ବୟସର ଉଭିନ୍ନଯୌବନା କିଶୋରୀ । ମୋର ପ୍ରିୟ ଚିତ୍ରତାରକା ସେଦିନ ଥିଲେ ମରଲିନ୍ । ତାଙ୍କର ମୃତ୍ୟୁ, ନା, ଆତ୍ମହତ୍ୟା ସମ୍ବାଦ ଶୁଣି ଗୀର୍ଜାକୁ ନଯାଇ ମୁଁ ତାଙ୍କ ଆପାର୍ଟମେଣ୍ଟରେ ପ୍ରବେଶ କରିଥିଲି । ନୀରବରେ, କମ୍ପିତ ବୁକୁରେ ।

ବିଦେଶିନୀ କଥା କହିବା ମଝିରେ ହଠାତ୍ ଅନ୍ୟମନସ୍କ ହୋଇଗଲା । ଅନେକ ଥର ମୁଁ ତା'ର ଉଦାସୀନ ଦୃଷ୍ଟି ଦେଖିଛି । କିନ୍ତୁ ଏ ଅନ୍ୟାମନସ୍କ ଦୃଷ୍ଟି ଯେପରି ଏକ ଭିନ୍ନ ଜଗତର ଦୃଷ୍ଟି ! ସତେ ଯେମିତି ସେ ଏଇ ମାତ୍ର ତା'ର ସାମ୍ନାରେ ଦେଖିପାରୁଛି ତା'ର ପ୍ରିୟ ଅଭିନେତ୍ରୀ, ହଲିଉଡ୍‌ର ରୂପସୀ ରାଜକୁମାରୀ, ପାଶ୍ଚାତ୍ୟ ଜଗତର ସେକ୍‌ସ କୁଇନ୍ ମରଲିନ୍ ମନୋରୋଙ୍କ ସଦ୍ୟ ମୃତ ଦେହ !

ଜ୍ୱଳନ୍ତ ସିଗାରେଟ ତା ଆଙ୍ଗୁଠି ପାଖକୁ ଜଳିଆସିବା ମାତ୍ରେ ଓଃ... ହାଉ୍.... ବୋଲି ସେ କ୍ଷୀଣ କଣ୍ଠରେ ଚିତ୍କାର କରିଉଠିଲା ।

ଦଗ୍ଧ-ପ୍ରାୟ ସିଗାରେଟ୍‌ର ସେଇ ଶେଷାଂଶ ଖସିପଡ଼ିଲା ତା'ର ଆଙ୍ଗୁଠି ଫାଙ୍କରୁ ।

ମୁଁ ବିବ୍ରତ, ବିଚଳିତ ହୋଇ ଆଙ୍ଗୁଠିର ବିଶେଷ କିଛି କ୍ଷତି ହୋଇଛି କି ନାହିଁ ଜାଣିବାପାଇଁ ତା' ପାଖକୁ ଉଠିଗଲାବେଳେ ସେ ପୁଣି ପିଲାଙ୍କ ଭଳି ହସିଉଠିଲା ।

ମତେ ଲକ୍ଷ୍ୟ କରି କହିଲା– ଜାଣନ୍ତି ନା, ମୁଁ ବଞ୍ଚିଛି କି ମରିଛି ସେ ବିଷୟରେ ବେଳେବେଳେ ମୋର ସନ୍ଦେହ ହୁଏ । ସେଇ ସନ୍ଦେହ ମୋଚନ ପାଇଁ ମତେ ବେଳେବେଳେ ନିଜ ଦେହରେ ଜଳନ୍ତା ସିଗାରେଟ୍‌କୁ ଛୁଆଁଇ ଦେବାକୁ ପଡ଼େ । ଦେହର ଚମଡ଼ା ନିଆଁର ଉତ୍ତାପ ସହ୍ୟ କରି ନପାରିଲେ ବିଶ୍ୱାସ ହୁଏ; ମୁଁ ବଞ୍ଚିଛି ।

ମୁଁ ସାଙ୍ଗେ ସାଙ୍ଗେ ମନ୍ତବ୍ୟ କଲି– ଏଭଳି ଏକ ସରଳ ସତ୍ୟକୁ ଜାଣିବା ପାଇଁ ଅଗ୍ନି-ପରୀକ୍ଷା ଦେବାର କିଛି ମାନେ ହୁଏନା । ହୁଏ ?

ସେ ମୃଦୁ ହସି ଉତ୍ତର ଦେଲା– ହୁଏ । ଖୁବ୍ । ଆମେ ଯେ ମୃତ ନୁହଁ; ଏକଥା ନିଜ ପାଖରେ ପ୍ରମାଣିତ କରିପାରିଲେ ହିଁ ଆମର ବଞ୍ଚିଥିବା ସମ୍ପର୍କରେ ବିଶ୍ୱାସ ହୁଏ । ଚାଲୁଥିଲାବେଳେ ମଧ୍ୟ ବେଳେବେଳେ ସନ୍ଦେହ ହୁଏ କୌଣସି ଯୁଦ୍ଧକ୍ଷେତ୍ରରେ ଗୁଳିବିଦ୍ଧ ଗୋଡ଼କୁ ଅସ୍ତ୍ରୋପଚାର ଦ୍ୱାରା ଅପସାରଣ କରାଯାଇ ଏକ କୃତ୍ରିମ ପ୍ଲାଷ୍ଟିକ୍ ଗୋଡ଼ ଆମ ଦେହରେ ଖଞ୍ଜିଦିଆଯାଇଛି । ଯାହା ସାହାଯ୍ୟରେ ଚାଲୁଛୁ ସେ ଆମର ଅରିଜିନାଲ ନିଜ ଗୋଡ଼ ନୁହେଁ ।

ମୁଁ ଏଥର ତାକୁ ପରିହାସ କରି କହିଲି– ଏଇଟା ମର୍‌ଫିନ୍ କିମ୍ବା ହେରୋଇନ୍ ନିଶାର କାରସାଦି । ଏଥିପାଇଁ ନିଜ ବୁଦ୍ଧି ଓ ବିବେକକୁ ଦୋଷ ଦେବା ଠିକ୍ ନୁହେଁ ।

ମୋ ମନ୍ତବ୍ୟରେ ଅପ୍ରସ୍ତୁତ ହୋଇପଡ଼ି ସେ ଏକ ଅଦ୍ଭୁତ ପ୍ରସ୍ତାବ ଉପସ୍ଥାପିତ କଲା ।

: ବେଟ୍ । ଆପଣଙ୍କ ଧାରଣା ଯଦି ଭୁଲ ବୋଲି ପ୍ରମାଣିତ ହୁଏ କଅଣ ଛାଡ଼ିବେ କହନ୍ତୁ । ମରଫିନ୍, ଏଲ୍.ଏସ୍.ଡି. କିମ୍ବା ହେରୋଇନ୍ କୃତ୍ରିମ ଗୋଡ଼ ଲଗାଇ ଚାଲୁଥିବା ଲୋକ ମନରେ ଅସଲି ଗୋଡ଼ରେ ଚାଲୁଥିବାର ପ୍ରତ୍ୟୟ ସୃଷ୍ଟି କରେ; ଗୋଡ ଥିବା ଲୋକ ମନରେ ଗୋଡ଼ ନଥିବାର ଭ୍ରାନ୍ତି ସୃଷ୍ଟି କରେନାଇଁ ।

ମୋ ପାଇଁ ବାଜି ଧରିବା ମଧ୍ୟ ଏକ ନିଷିଦ୍ଧ ନିଶା । ସେ ଭୟଙ୍କର ଖେଳ ପାଇଁ ମୁଁ ଆଉ ମନ ବଳାଇଲି ନାହିଁ ।

ଚେୟାର ଉପରେ କିଛି ସମୟ ଗୋଡ଼ ଜାକି ଦୁଇ ହାତ ପାପୁଲିରେ ନିଜ ମୁହଁକୁ ଚାପି ଧରି ସେ ବସିରହିଲା । ବିଚିତ୍ର ତା'ର ବସିବା ଭଙ୍ଗୀ । ମୁଁ କେବଳ ତା'ର ଅଲକ୍ଷ୍ୟରେ ତାକୁ ଲକ୍ଷ୍ୟକଲି ।

କିଛି ମନ୍ତବ୍ୟ କଲିନାହିଁ ।

ରଙ୍ଗମଞ୍ଚ ଉପରୁ ଧୀରେ ଧୀରେ ପରଦା ଅପସାରିତ ହୋଇଯାଉଥିବା ଭଳି ତା'ର ଦୁଇହାତ ପାପୁଲିରୁ ତା'ର ସେ କଇଁଫୁଲ ଭଳି, କୁଇଣ୍ଟାଲ କୁଇଣ୍ଟାଲ ମଲ୍ଲୀ ଫୁଲର ମସୃଣତାରେ ଲାବଣ୍ୟ ଛଳ ଛଳ ମୁହଁ ସମ୍ପୂର୍ଣ୍ଣ ମୁକ୍ତହେଲା ।

ସେ ମତେ ସ୍ଥିର ଦୃଷ୍ଟିରେ ଚାହିଁ କହିଲା– ଜାଣନ୍ତି, ଯେଉଁଦିନ ମୁଁ ମରଲିନ୍ ମନ୍‌ରୋଙ୍କ ମୃତଦେହ ଦେଖିଲି ସେଇଦିନ ମୋ ଆଖି ଆଗରେ ଈଶ୍ୱରଙ୍କ ମୃତ୍ୟୁ ହୋଇଗଲା । ଗୋଟାଏ

ଆଦର୍ଶର ଭାବମୂର୍ତ୍ତି ନୁହେଁ; ପରମ ଆଉ ଚରମ ବିଶ୍ୱାସର ଅଭଙ୍ଗ-ପ୍ରତିମା ମୋ ସାମ୍ନାରେ ଭାଙ୍ଗି ଟିକ୍ ଟିକ୍ ହୋଇଗଲା । କ୍ରାଡ୍‌ଲ ଉପରୁ ଉଠାଇଆଣିଥିବା ଟେଲିଫୋନ୍ ରିସିଭର ନିଜ ମୁହଁ ପାଖରେ ଧରିଥିବାବେଳେ ତାଙ୍କର ମୃତ୍ୟୁ ହୋଇଥିଲା । କାହାକୁ ଫୋନ୍ କରୁଥିଲେ ମନ୍‌ରୋ ! ଈଶ୍ୱରଙ୍କୁ ? ଠିକ୍ ଜାଣେନା, କିନ୍ତୁ ତାଙ୍କ ବେଡରୁମ୍ ଟେବୁଲ ଉପରେ ୨୫ଟି ନିଦ ବଟିକା ଥିବା ବୋତଲ ଶୂନ୍ୟହୋଇଯାଇଥିଲା । ସେ ଖାଲି ବୋତଲର ଦୃଶ୍ୟ ମୁଁ ଟେଲିଭିଜନରେ ଦେଖିଛି । ସି. ଓ୍ୱାଜ୍ ଓନ୍‌ଲି ଥାର୍ଟିସିକ୍ସ ! ମୁଁ ଆଉ ମୋ ବୟସର ସବୁ ଆମେରିକାନ୍ ପୁଅଝିଅଙ୍କ ପାଇଁ ମରଲିନ୍ ଥିଲେ ଏକ ଆଦର୍ଶ ନାରୀତ୍ୱର ପ୍ରତୀକ । ଖ୍ୟାତିର ଚରମ ଶିଖରରେ ସେ ପହଞ୍ଚିଥିଲେ । ଧନର ପ୍ରାଚୁର୍ଯ୍ୟ ମଧ୍ୟରେ ବାସକରୁଥିଲେ । ଗୋଟିକ ପରେ ଗୋଟିଏ ବିବାହ ତାଙ୍କର ବିଫଳ ହୋଇଯାଇଥିଲା । ତଥାପି ପରିପୂର୍ଣ୍ଣ ପ୍ରେମର ଆସ୍ୱାଦନ ପାଇଁ ନୂତନ ବିବାହ ଲାଗି ତାଙ୍କର ଉତ୍ସାହରେ କେବେ ଭଟ୍ଟା ପଡ଼ି ନଥିଲା । କେତେଥର ଗର୍ଭସ୍ଥ ସନ୍ତାନ ନଷ୍ଟ ହୋଇଯାଇଥିଲେ ବି ସନ୍ତାନଟିଏ କୋଲରେ ଧରିବାର ନିଶା ତାଙ୍କୁ ବାରମ୍ବାର ଅନ୍ତଃସତ୍ତ୍ୱା ହେବା ପାଇଁ ପ୍ରଲୁବ୍ଧ କରିଥିଲା । ମୋଟାମୋଟି ସେ ଥିଲେ ଆମେରିକାର ରୁଗ୍‌ଣ ସାମାଜିକ ଜୀବନର ହତାଶା ଆଉ ଆଶାର ପ୍ରତୀକ । ଅତିରିକ୍ତ ନିଦ ବଟିକା ଖାଇ ଶେଷରେ ତାଙ୍କୁ ଆତ୍ମହତ୍ୟା କରିବାକୁ ହେଲା ! ତାଙ୍କର ମୃତ୍ୟୁ ସମ୍ବାଦ ଶୁଣି କେତେଜଣ ଆମେରିକାନ୍ କୋଠା ଛାତ ଉପରୁ ଲମ୍ଫ ଦେଇ ଆତ୍ମହତ୍ୟା କରିଥିଲେ । କାରଣ ମନ୍‌ରୋଙ୍କ ଡେଥ୍ ଏକ ବ୍ୟକ୍ତିଗତ ଦୁର୍ଘଟଣା ନୁହେଁ... ଏହା ସାରା ଆମେରିକାର ମର୍ମନ୍ତୁଦ ଟ୍ରାଜେଡି । ମରଲିନଙ୍କ ମୃତ ଦେହ ନିଜ ଆଖିରେ ଦେଖି ଆସିବା ପରେ ମୁଁ ଭାଙ୍ଗିପଡ଼ିଥିଲି । ମୋର ଆତ୍ମପ୍ରତ୍ୟୟ ସ୍ୱପ୍ନ, ଶକ୍ତି– ସବୁ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିଥିଲା । ସେ ଆଘାତର ଧ୍ୱଂସସ୍ତୂପ ଭିତରୁ ମୁଁ ଆଉ କେବେ ମୁଣ୍ଡ ଟେକି ଉଠି ଠିଆହୋଇପାରିନି । ମରଲିନ୍‌ଙ୍କ ମୃତ୍ୟୁ ମୋ ଆଖିରେ ଆଙ୍ଗୁଠି ଭର୍ତ୍ତିକରି ବୁଝାଇଦେଇଥିଲା, ଆମେରିକାର ଐଶ୍ୱର୍ଯ୍ୟ, ତା'ର ଶକ୍ତିଶାଳୀ ଯୁଦ୍ଧମେସିନ୍, ତା'ର ଚନ୍ଦ୍ର ଆଉ ମଙ୍ଗଳଗ୍ରହର ପଦାର୍ପଣ, ଏସବୁ ମିଥ୍ୟା; ଏସବୁ ଫାଙ୍କି । ଜୋର୍ କରି ଆମ ଜେନେରେସନ୍ ଉପରେ ବାତିଲ ହୋଇଯାଇଥିବା ଏକ ଅଚଳ ସାମାଜିକ ମୂଲ୍ୟବୋଧକୁ ସେମାନେ ଚପାଇ ଦେବାକୁ ବସିଛନ୍ତି । ଶାନ୍ତି ନାମରେ ଯୁଦ୍ଧ, ଜୀବନ ନାମରେ ମୃତ୍ୟୁର ଶୀତଳ ସ୍ପର୍ଶ ! ଆମେ ଅଣନିଃଶ୍ୱାସୀ ହୋଇଯାଉଥିବା ନୂଆ ଜେନେରେସନ୍‌ରୁ ତରୁଣୀ ମୁଣ୍ଡରେ ଚଢ଼େଇମାନଙ୍କ ରଙ୍ଗୀନ ପର ଖୋଷି, ହାତରେ ଚିଲମ ଆଉ ଇଞ୍ଜେକସନ ସିରିଞ୍ଜ ଧରି ରାସ୍ତା ଉପରକୁ ବାହାରିଆସିଲୁ । ସେଇଦିନୁ ଆଉ ପଛକୁ ଫେରି ଚାହିଁନୁ । ସୁଖ ଚାରିକାନ୍ଥର ଘର ଭିତରେ ନ ଥାଏ, ନାଗରିକକୁ ନିରାପତ୍ତା ଦେଇପାରେନା ରାଷ୍ଟ୍ରର ସାମରିକ ଶକ୍ତି; ଏକଥା ବୁଝିଗଲା ପରେ ରାସ୍ତା ଉପରେ ଆମେ କେବେ ନିଜକୁ ବିପନ୍ନ ମନେ କରିନାହୁଁ । ଦେଖୁଛନ୍ତି ତ ମୁଁ ବଞ୍ଚିଛି, ଆପଣଙ୍କ ସହିତ ଗପ କରୁଛି ଅଥଚ ମୋର କୌଣସି ବ୍ୟକ୍ତିଗତ ସମ୍ପତ୍ତି ନାହିଁ; ଘର ନାହିଁ; ନାସ୍‌ନାଲିଟି ନାହିଁ । ଅଛି ?

ପ୍ରଚୁର ଉଷ୍ମ ଖରା କୋଠରି ସାରା ବିଞ୍ଚି ହୋଇ ପଡ଼ିଥିଲା ।

କର୍ମ-ଚଞ୍ଚଳ ପାଞ୍ଜିମ୍‌ର ରାଜପଥ ଉପରୁ ବାରମ୍ବାର ଶ୍ରୁତିକଟୁ ଯାନବାହାନର ଶବ୍ଦ ଭାସିଆସୁଥିଲା । ଆଉ କପେ ଚା'ର ଆକର୍ଷଣ ଅନୁଭବ କରି ମୁଁ କଲିଂବେଲ୍ ବଜାଇଲି ।

ନା, କେହି ଆସିଲେ ନାହିଁ ।

ବିରକ୍ତି ଓ କ୍ରୋଧରେ ଟୁରିଷ୍ଟ ଲଜ୍‌ର ମ୍ୟାନେଜରଙ୍କୁ ଦୁଇପଦ କଡ଼ା କଥା ଶୁଣାଇଦେବାପାଇଁ ସାର୍ଟ ଦେହରେ ଝୁଲାଇଦେଇ ମୁଁ ବାହାରକୁ ଉଠିଗଲି ।

ମ୍ୟାନେଜର ମୋର ଅଭିଯୋଗ ଶୁଣି ମନ ଦୁଃଖକଲେ । କ୍ଷମା ପ୍ରାର୍ଥନା କରି କହିଲେ– ମୁଁ ଆପଣଙ୍କ ଅସୁବିଧା ପାଇଁ ଆନ୍ତରିକ ଦୁଃଖିତ । ଆଜି ଟୁରିଷ୍ଟ ଲଜ୍‌ର ସବୁ କର୍ମଚାରୀ ଧର୍ମଘଟ କରିଛନ୍ତି । କାଲି ମଧ୍ୟରାତ୍ରିରୁ ଅଚାନକ କାମବନ୍ଦ ଆନ୍ଦୋଳନ । ଟୁରିଷ୍ଟ ସିଜିନ୍‌ରେ ଏମିତି ଅଚାନକ ଧର୍ମଘଟ କରି ସେମାନେ କିଛି ଅତିରିକ୍ତ ସୁବିଧା ଆଦାୟ କରିନିଅନ୍ତି । ସାର୍ ! ଦେଶରେ ଯେ ଗଣତନ୍ତ୍ର ଜୀବିତ ଅଛି; ଏକଥା ଅନୁଭବ କରିବାକୁ ହେଲେ ଏଭଳି ଧର୍ମଘଟଜନିତ ଅସୁବିଧାରେ ପଡ଼ିବାକୁ ହୁଏ । ମୁଁ ଖୁବ୍ ଦୁଃଖିତ ସାର୍ ! ତେବେ ଭାବୁଛି ଆଜି ସନ୍ଧ୍ୟାସୁଦ୍ଧା କିଛି ଗୋଟାଏ ସମାଧାନ ହୋଇଯିବ ।

ମୁଁ ମାଡ଼ ଖାଇ ମାଡ଼ ନଦେଇ ପାରିବାର ଗ୍ଲାନିରେ ଭାଙ୍ଗିପଡୁଥିବା ଜଣେ ହତଭାଗ୍ୟ, ଅସହାୟ ଭଳି ମୋ ରୁମ୍‌କୁ ନୀରବରେ ଫେରିଆସିଲି ।

ମୋର ଅନୁପସ୍ଥିତିରେ ହିପ୍‌ପିଣୀ ଚୟୋରରେ ଶୋଇଯାଇଥିଲା । ନିଘୋଡ଼ ନିଦ । ତା'ର ଦୁଇ ଉଦ୍ୟତ ସ୍ତନ ଶ୍ୱାସ ପ୍ରଶ୍ୱାସ ସହିତ ତାଳ ରଖି ପ୍ରକମ୍ପିତ ହେଉଥିଲା । ବାମ ହାତ ଝୁଲିପଡ଼ିଥିଲା ଚେୟାର ବାଡ଼ ଦେଇ ତଳକୁ । ମୁହଁ ଉପରେ ମୁଣ୍ଡର କହରା କେଶଗୁଚ୍ଛ ଘୋଡ଼େଇ ହୋଇ ପଡ଼ିଥିଲା ।

ମୁଁ ଜାଣି ଜାଣି ତା'ର ସୁନିଦ୍ରା ଭାଙ୍ଗିଲି ନାଇଁ ।

ଅତିରିକ୍ତ ନିଦ-ବଟିକା ଖାଇ ମରଲିନ୍ ମନରୋଙ୍କ ମୃତ୍ୟୁ ପରେ ସାରା ଆମେରିକା ବୋଧହୁଏ ନିଦ୍ରାହୀନତା ରୋଗ ଭୋଗ କରୁଛି । ଯଦି ଏଇ ଆମେରିକାନ୍ ଝିଅଟି ଗୋଆ ଟୁରିଷ୍ଟ ଡିପାର୍ଟମେଣ୍ଟର ଏଇ କୋଠରିରେ ବିନା ବଟିକାରେ ନିଘୋଡ଼ ନିଦରେ ଶୋଇଯାଇଥାଏ; ତାକୁ ଉଠାଇଦେଲେ ପାପ ହେବ ନାହିଁ ? ସେମାନଙ୍କ ପାଇଁ ତ ସୁନିଦ୍ରା ସୁଖର ସର୍ବୋତ୍‌କୃଷ୍ଟ ରୂପ !!

ମୁଁ ଆଉ ଥରେ ହିପ୍‌ପିଣୀର ନିଦ୍ରାଭିଭୂତ ସରଳ ସୁନ୍ଦର ମୁହଁକୁ ଚାହିଁ ଟୁଥ୍ ବ୍ରସ୍‌ରେ ପେଷ୍ଟ ଲଗାଇଲି ।





"What does it profit a man if he gains the whole world and loses his own soul ?"

ସାରା ଜଗତକୁ ଜୟ କରି ଯଦି ମଣିଷ ନିଜର ଆତ୍ମାକୁ ହରାଇବସେ, ତାହା ହେଲେ ଜଗତ ଜୟ କରି ତା'ର ଲାଭ କ'ଣ ?

ସେଣ୍ଟ୍ ଇଗ୍‌ନେସିୟାସ୍‌ଙ୍କ ଏହି ବାଣୀ ଦିନେ ଫ୍ରାନ୍‌ସିସ୍ ଜେଭିୟାରଙ୍କ ଗଭୀର ଆଲୋଡନ ସୃଷ୍ଟି କରିଥିଲା । ଏହି ବାଣୀର ମର୍ମ ଉପଲବ୍ଧି କରି ୩୫ ବର୍ଷ ବୟସରେ ସେ ଗୋଆର ଗଭର୍ଣ୍ଣର ମାର୍ଟିନ୍ ଆଫ୍‌ନଜୋ ଡିସୁଜାଙ୍କ ସହିତ ଲିସବନରୁ ଗୋଆ ଅଭିମୁଖେ ଯାତ୍ରାରମ୍ଭ କରିଥିଲେ । ପର୍ତ୍ତୁଗୀଜ ଇଣ୍ଡିୟାର କ୍ୟାପିଟାଲ ଥିଲା ସେତେବେଳେ ଗୋଆ । ଜେଭିୟାର ୧୫୪୨ ମସିହା ମେ ମାସ ୬ ତାରିଖ ଦିନ ଗୋଆର ମାଟିରେ ପଦାର୍ପଣ କରିଥିଲେ ।

ଗୋଆକୁ ପର୍ତ୍ତୁଗୀଜ ଉପନିବେଶରେ ପରିଣତ କରିବା ପାଇଁ ଦିନେ ଆଲବୁକର୍କ ତୋପ, କମାଣ, ବନ୍ଧୁକ ଧରି ଲଢ଼େଇ କରିଥିଲେ । ସେ ଗୋଆକୁ ଜୟ କରିଥିଲେ; କିନ୍ତୁ ଗୋଆବାସୀ ହିନ୍ଦୁ ମୁସଲମାନ ଅଧିବାସୀଙ୍କ ହୃଦୟ ଜୟ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନଥିଲା ଫ୍ରାନ୍‌ସିସ୍ ଜେଭିୟା ସେହି ହୃଦୟ-ବିଜୟ ଅଭିଯାନରେ ଆସିଥିଲେ ଗୋଆ । ବନ୍ଧୁକ ବଦଳରେ ହାତରେ ଥିଲା ତାଙ୍କର ବାଇବେଲ । ତାଙ୍କ ବାସଗୃହ ପରିଣତ ହୋଇଥିଲା ରୁଗ୍ଣ ଦରିଦ୍ର ଜନତାର ସେବା ପାଇଁ ହସ୍‌ପିଟାଲରେ । ଯେଉଁମାନେ ବିଭିନ୍ନ ଅପରାଧରେ ଜେଲ୍‌ଦଣ୍ଡ ଭୋଗ କରୁଥିଲେ ସେଇ ଅପରାଧୀ କଏଦୀମାନଙ୍କ ସେବା କରିବା ପାଇଁ ସେ ନିଜର ବହୁ ସମୟ ବ୍ୟୟ କରିଥିଲେ । ଲିସ୍‌ବନ୍‌ରୁ ଦରିଦ୍ର ନିପୀଡ଼ିତ ମଣିଷର ସେବା କରିବା ପାଇଁ ଜଣେ ମହାପୁରୁଷ ଆସିଛନ୍ତି, ଏ ସମ୍ବାଦ ଗୋଆର ଘରେ ଘରେ ପହଞ୍ଚିବା ପାଇଁ ବିଳମ୍ବ ହୋଇ ନଥିଲା । ପାଦରେ ଚାଲି ଚାଲି ପରିକ୍ରମା କଲାବେଳେ ହାତରେ ଧରିଥିବା ଘଣ୍ଟି ବଜାଇ ଦେବା ମାତ୍ରେ ଆଖପାଖରେ ଥିବା ଛୁଆ ପିଲା, ନାରୀ ପୁରୁଷ ତାଙ୍କ ଚାରିପାଖରେ ରୁଣ୍ଡ ହୋଇଯାଉଥିଲେ । ସେଇ ସମବେତ ଲୋକଙ୍କ ଉଦ୍ଦେଶ୍ୟରେ ଖ୍ରୀଷ୍ଟଧର୍ମର ବାଣୀ ପ୍ରଚାର କରୁଥିଲେ ଫ୍ରାନ୍‌ସିସ୍ ଜେଭିୟାର । ତାଙ୍କର ବାଣୀ ଶୁଣି ଗୋଆର ହଜାର ହଜାର ହିନ୍ଦୁ ମୁସଲମାନ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ।

ଚୀନ୍‌ରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବାକୁ ଯାଇଥିବାବେଳେ ଚୀନ୍‌ର ମୂଳଭୂଖଣ୍ଡ କାଣ୍ଟନ ନିକଟରେ ୧୫୫୨ ମସିହା ଡିସେମ୍ବର ୬ ତାରିଖ ଦିନ ତାଙ୍କର ମୃତ୍ୟୁ ହୋଇଥିଲା । ମୃତ୍ୟୁପରେ ତାଙ୍କର ମୃତ ଦେହକୁ ଅଣାଯାଇ ଗୋଆର ବମ୍ ଜେସାସ୍ ବ୍ୟାସେଲିକାରେ ଏକ ରୌପ୍ୟ ଶବାଧାରରେ ରଖାଯାଇଛି, ପ୍ରତି ଦଶବର୍ଷରେ ଥରେ ଫ୍ରାନ୍‌ସିସ୍‌ଙ୍କ ଏଇ ମୃତ ଦେହକୁ ଶବାଧାରରୁ ଦର୍ଶକମାନଙ୍କ ପାଇଁ କଢ଼ାଯାଏ । ତାଙ୍କର ମୃତଦେହକୁ ସମ୍ମାନ ଜଣାଇବା ପାଇଁ କେବଳ ଗୋଆରୁ ନୁହେଁ; ପୃଥିବୀର ବିଭିନ୍ନ ଅଞ୍ଚଳରୁ ଯାତ୍ରୀମାନେ ଛୁଟିଆସନ୍ତି ବହୁ ସଂଖ୍ୟାରେ । ବମ୍ ଜେସାସ୍ ବ୍ୟାସେଲିକା ଆଉ 'ସେ କ୍ୟାଥେଡ୍ରାଲ୍'ରେ ବିପୁଳ ଉତ୍ସାହରେ ଅନୁଷ୍ଠିତ ହୁଏ ଏହି ଆଧାତ୍ମିକ ମହୋତ୍ସବ ।

ଆମର ଟାକ୍‌ସି ଡ୍ରାଇଭର୍ ଆମ ଦୁହିଁଙ୍କ ଉଦ୍ଦେଶ୍ୟରେ ପଛକୁ ଦୃଷ୍ଟି ଫେରାଇ କହିଲା– ସାର୍ ! ଆମେ ବର୍ତ୍ତମାନ ସେଇ ବମ୍ ଜେସାସ୍ ବ୍ୟାସେଲିକା ପାଖରେ ପହଞ୍ଚି ଯାଇଛୁ । ଫ୍ରାନ୍‌ସିସ୍ ଜେଭିୟାର୍‌ଙ୍କ ସଂଗୃହୀତ ଅର୍ଥରେ ଏହି ଚର୍ଚ୍ଚ ତିଆରି ହୋଇଥିଲା; କିନ୍ତୁ ଏହାର ନିର୍ମାଣ କାର୍ଯ୍ୟ ଶେଷ ହେଲା ତାଙ୍କ ମୃତ୍ୟୁର ଛଅମାସ ପରେ । ଦେଖିବେ ସାର୍ ! ଏଭଳି ଚମତ୍କାର ଶିଳ୍ପକଳା ସମୃଦ୍ଧ ଚର୍ଚ୍ଚ ଅନ୍ୟତ୍ର କେଉଁଠି ନାହିଁ ।

ଯେଉଁ ଟାକ୍‌ସି ଡ୍ରାଇଭର ଆମକୁ ଫ୍ରାନ୍‌ସିସ୍ ଜେଭିୟାର୍‌ଙ୍କ ନିରଳସ ସାଧନା ଆଉ ବମ୍ ଜେସାସ୍ ବ୍ୟାସେଲିକାର କାରୁକାର୍ଯ୍ୟର ମହତ୍ତ୍ୱ ସମ୍ପର୍କରେ ବୁଝାଉଥିଲା ସେ ଖ୍ରୀଷ୍ଟିୟାନ ନୁହେଁ, ହିନ୍ଦୁ । ଆଉ ଆମ ତିନିଜଣଙ୍କ ମଧ୍ୟରେ ଯେ ଏକମାତ୍ର ଖ୍ରୀଷ୍ଟିୟାନ୍, ସେଇ ବିଦେଶିନୀ, ତା'ର ମନ କିନ୍ତୁ ଏସବୁ ତତ୍ତ୍ୱ ଓ ତଥ୍ୟ ଶୁଣିବାପାଇଁ ଆଦୌ ପ୍ରସ୍ତୁତ ନ ଥିଲା ।

ପାଞ୍ଜିମ୍‌ରୁ ଏଇ ପ୍ରାଚୀନ ଗୋଆର ଚର୍ଚ୍ଚ ପାଖକୁ ଆସିବା ବାଟରେ ମୁଁ ଲକ୍ଷ୍ୟ କରିଛି ଟାକ୍‌ସି ଡ୍ରାଇଭର କଥା ଶୁଣି ସେ କାନରେ ଅଙ୍ଗୁଳି ଦେଉଥିଲା; ସତେ ଯେମିତି ଏସବୁ କଥା ଶୁଣି ଶୁଣି ତା'ର କାନ ବଧିର ହୋଇଯିବାକୁ ବସିଛି ।

ଟାକ୍‌ସିରୁ ଅବତରଣ କରିବା ମାତ୍ରେ ସେ ଗୋଟାଏ ଲମ୍ବା ଦୀର୍ଘଶ୍ୱାସ ଛାଡ଼ି କହିଲା– ଯାହାହେଉ ମଣିଷ ବଞ୍ଚିଗଲା । ଏଠାରେ ଟାକ୍‌ସି ଡ୍ରାଇଭର, ବସ୍ କଣ୍ଡକ୍ଟର ସୁବିଧା ପାଇବା ମାତ୍ରେ ଭ୍ରମଣକାରୀମାନଙ୍କୁ ଗୋଆର ଇତିହାସ, ଭୂଗୋଳ, ପ୍ରାକୃତିକ ସୌନ୍ଦର୍ଯ୍ୟ ଆଉ ଧର୍ମୀୟ ମହତ୍ତ୍ୱ ସମ୍ପର୍କରେ ଦୀର୍ଘ ଭାଷଣ ନଦେଇ କେବେହେଲେ ଛାଡ଼ନ୍ତି ନାହିଁ । ଏହା ଯେ ନୀରବରେ ଉପଲବ୍ଧ କରିବାର ବସ୍ତୁ, ଏକଥା ସେମାନେ ଆଦୌ ବୁଝନ୍ତି ନାହିଁ ।

: ମୋ ଭଳି ନୂତନ ଆଗନ୍ତୁକମାନଙ୍କ ପାଇଁ ଏସବୁ ତଥ୍ୟ କିନ୍ତୁ ଭାରି ଆକର୍ଷଣୀୟ । ଶାହାଜାହାନଙ୍କ ପତ୍ନୀ ପ୍ରେମ କଥା ନଜାଣି ତାଜମହଲ ଦେଖିଲେ ଯେପରି ତା'ର ସୌନ୍ଦର୍ଯ୍ୟ ଅର୍ଦ୍ଧେକ ଉପଲବ୍ଧିର ବାହାରେ ରହିଯାଏ; କୌଣସି ଅଞ୍ଚଳର ଇତିହାସ, କିମ୍ବଦନ୍ତୀ ନଜାଣି ତା'ର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ସେହିପରି ସମ୍ପୂର୍ଣ୍ଣ ଉପଭୋଗ କରିହୁଏ ନାହିଁ । ସତ କହିବାକୁ ଗଲେ ପ୍ରକୃତିର ସୌନ୍ଦର୍ଯ୍ୟ ସ୍ଥିର, ଏକାପରି, ଫଟୋଗ୍ରାଫିକ୍ । ମଣିଷର ସାଧ ସାଧନା, ସେଇ ସ୍ଥିର, ଫଟୋଗ୍ରାଫିକ୍ ସୌନ୍ଦର୍ଯ୍ୟରେ ଜୀବନ ସଂଚାର କରେ । ସେଥିପାଇଁ ଆମ ଟାକ୍‌ସି ଡ୍ରାଇଭର ପାଇଁ ମୋର ଅନେକ, ଅନେକ ଆନ୍ତରିକ ଧନ୍ୟବାଦ ! – ମୁଁ ସତକୁ ସତ ଟାକ୍‌ସି ଡ୍ରାଇଭରକୁ ତା ଭଡ଼ା ଟଙ୍କା ତୁଟାଇ ଦେବା ସଙ୍ଗେ ସଙ୍ଗେ ଧନ୍ୟବାଦ ଜଣାଇଲି ।

ହିପ୍‌ପିଣୀ ମୋ କଥା ଶୁଣି ହସିଲା ।

କହିଲା– ସତ କହିବି ? ମୁଁ ସେ ଡ୍ରାଇଭରର ଭାଷା ଠିକ୍ ବୁଝି ପାରି ନଥିଲି । ସେ ଏତେ ଚଞ୍ଚଳ ଚଞ୍ଚଳ ହିନ୍ଦୁସ୍ଥାନୀ ଭାଷାରେ କଥା କହୁଥିଲା ଯେ, ତା'ର ସବୁ କଥା ବୁଝିବା ମୁସ୍କିଲ୍ । ଆଉ ବୁଝି ନପାରିଲେ କଥା କେବେ ଭଲ ଲାଗେ ?

: ଏକାଗ୍ରତା ଆଉ ନିଷ୍ଠା ଥିଲେ ମୁହଁର ଭଙ୍ଗୀ ଦେଖି ଭାଷା ମଧ୍ୟ ବୁଝିହୁଏ । ମୁଁ ମଧ୍ୟ ତମ ଭଙ୍ଗା ଭଙ୍ଗା ହିନ୍ଦୀ, ଫିସ୍ ଫିସ୍ ଇଂରେଜୀ କଥାର ସବୁ ଶବ୍ଦ ଶୁଣିପାରେ ନାହିଁ । କିନ୍ତୁ ମୋଟାମୋଟି ସବୁ କଥା ବୁଝିଯାଏ । ତମ କଣ୍ଠସ୍ୱର ଭାରି କୋମଳ । ମିଠା । ଖୁବ୍ ଧୀରେ ଧୀରେ ତମେ ପ୍ରତିଟି ଶବ୍ଦ ଉଚ୍ଚାରଣ କର । ତଥାପି ତମର ସବୁକଥା ବୁଝିବାପାଇଁ ମତେ କିଛି ପରିମାଣରେ ନିଜ କଳ୍ପନାଶକ୍ତି ଉପରେ ନିର୍ଭର କରିବାକୁ ହୁଏ । – ମୁଁ ଉତ୍ତର ଦେଲି ।

ତା'ର କଣ୍ଠସ୍ୱର କୋମଳ ଆଉ ମଧୁର; ଏ କଥା ତାକୁ ପ୍ରଶଂସା ଭଳି ମନେହେଲା । ସେ ଅନ୍ୟ ପ୍ରସଙ୍ଗ ଏଡ଼ାଇ ଯାଇ ସେଇ କଥା ଆଉ ଥରେ ପଚାରିଲା– ସତରେ ମୋ କଣ୍ଠସ୍ୱର ସଫ୍‌ଟ ଆଉ ସୁଇଟ୍ ! ଆଉ ଥରେ ସେ କଥା କୁହନ୍ତୁ ନା ! ଅନେକ ଦିନୁ ଏଭଳି କଥା କାହାରିଠାରୁ ଶୁଣିନାହିଁ । ସେ ମୃତ ବା ନିରୁଦ୍ଦିଷ୍ଟ ସୈନିକ ବନ୍ଧୁ ମୋ ଦେହ ସୌନ୍ଦର୍ଯ୍ୟର ଅନେକ ଥର ପ୍ରଶଂସା କରିଥିଲା; କିନ୍ତୁ ମୋ କଣ୍ଠସ୍ୱରର ପ୍ରଶସ୍ତି ତା'ମୁହଁରୁ ମୁଁ ଥରେହେଲେ ଶୁଣିନାହିଁ ।

ଆମେରିକାନ୍ ହୁଅନ୍ତୁ ବା ଇଣ୍ଡିୟାନ ହୁଅନ୍ତୁ, ସବୁ ଝିଅ ଏମିତି । ନିଜର ପ୍ରଶଂସା ଶୁଣିଲେ ସେମାନେ ବିଗଳିତ ହୋଇପଡ଼ନ୍ତି । ହିପ୍‌ପିଣୀଠାରେ ସେଇ ନାରୀସୁଲଭ ଦୁର୍ବଳତା ଲକ୍ଷ୍ୟ କରି ମନେ ମନେ ଖୁବ୍ ଉଲ୍ଲସିତ ହେଲି; କିନ୍ତୁ ସେ ରାସ୍ତାରେ ବେଶୀ ଦୂର ଆଗେଇବା ପାଇଁ ଇଚ୍ଛା ହେଲା ନାହିଁ ।

ମଧ୍ୟାହ୍ନର ସୂର୍ଯ୍ୟ ମଧ୍ୟ ଆକାଶରେ ଚିକ୍ ଚିକ୍ କରୁଛି । କିନ୍ତୁ ତା'ର କିରଣରେ ବିଶେଷ ଉତ୍ତାପ ନାହିଁ । ସମୀରଣ ସ୍ନିଗ୍ଧ, ଶୀତଳ । ଦଳ ଦଳ ଭ୍ରମଣକାରୀ ବମ୍ ଜେସାସ୍ ଗୀର୍ଜା ଭିତରୁ ବାହାରକୁ ଆସୁଛନ୍ତି; ବାହାରରୁ ଭିତରକୁ ଯାଉଛନ୍ତି । ବ୍ୟାସେଲିକାର ହତାକୁ ଲାଗି କେତୋଟି ଛୋଟ ଦୋକାନ । ଗୋଆର ପିକ୍‌ଚର୍ କାର୍ଡ ସିଗାରେଟ୍ ଆଉ କୋଲ୍ଡ୍ ଡ୍ରିଙ୍କ ପାଇଁ ଅନେକ ଭ୍ରମଣକାରୀ ମଧ୍ୟ ଭିଡ଼ ଜମାଇଛନ୍ତି ସେ ଦୋକାନ ପାଖରେ ।

ହିପ୍‌ପିଣୀ ଜୋର୍ କରି ମତେ ଗୋଟାଏ କୋଲ୍ଡ ଡ୍ରିଙ୍କ ପିଆଇଲା ।

ଏଇ କେତେଦିନର ମିଳାମିଶା ମଧ୍ୟରେ ଆମ ଦୁହିଁଙ୍କ ଭିତରେ ଏପରି ଏକ ନିକଟ ଆତ୍ମୀୟତା ଗଢ଼ିଉଠିଥିଲା ଯେ ମୁଁ ଇଚ୍ଛା ଥିଲେ ମଧ୍ୟ ତାକୁ ବାଧା ଦେଇପାରିଲି ନାହିଁ ।

ତା'ପରେ ସେ ତା' ପର୍ସରୁ ଚାଳିଶଟା ଟଙ୍କା ବାହାର କରି କହିଲା– ଇଚ୍ଛା କଲେ ଏଇ ମୁହୂର୍ତ୍ତରେ ମୁଁ ଆପଣଙ୍କ ଚାଳିଶ ଟଙ୍କାର ଋଣ ଶୁଝି ଦେଇପାରେ । ପ୍ରକୃତରେ ଏ ଟଙ୍କା ପଲ୍‌ଠାରୁ ମୁଁ ସେହି ଉଦ୍ଦେଶ୍ୟରେ ହିଁ ଆଣିଛି । କିନ୍ତୁ ଆପଣଙ୍କ ପାଖରୁ ଋଣମୁକ୍ତ ହୋଇଯିବାପାଇଁ ଏତେ ଚଞ୍ଚଳ ଇଚ୍ଛା ହେଉନି । ଜୀବନରେ ଜଣ ଜଣଙ୍କ ପାଖରେ ଋଣୀ ହୋଇ ରହିବାରେ କିଛି ପରିମାଣରେ ଆନନ୍ଦ ଥାଏ । ନା ?

ଏଭଳି ପ୍ରଶ୍ନର କି ଉତ୍ତର ଦିଆଯାଇପାରେ ମତେ ଜଣା ନଥିଲା । ହିପ୍‌ପିଣୀ ଯେ ପ୍ରକୃତରେ ମତେ ଚାଳିଶ ଟଙ୍କା ଫାଙ୍କି ଦେବାକୁ ଚାହେନା, ସେ ବିଷୟରେ ମୁଁ ଏଥି ମଧ୍ୟରେ ନିଃସନ୍ଦେହ ହୋଇସାରିଥିଲି । ଚାଳିଶ ଟଙ୍କା ଫେରି ପାଇବା ପାଇଁ ସେଥିଲାଗି ମୋର କୌଣସି ଉଦ୍‌ବେଗ ନ ଥିଲା ।

ମୁଁ ତାକୁ ଆନ୍ତରିକ, ସ୍ନେହ ସଜଳ କଣ୍ଠରେ କହିଲି— ମାଡାମ୍ ! ଐଶ୍ୱର୍ଯ୍ୟର ଉତ୍ପୀଡ଼ନରେ ଅତିଷ୍ଠ ହୋଇ ତମେ ହିପ୍‌ପିଣୀ ଜୀବନ ସ୍ୱେଚ୍ଛାରେ ବରଣ କରିନେଇଛ । ମୁଁ କିନ୍ତୁ ଜଣେ ସ୍ୱଳ୍ପବିତ୍ତ ଭ୍ରମଣାର୍ଥୀ । ଚାଳିଶ ଟଙ୍କା ମୋ ପାଇଁ ସେଭଳି କିଛି ବଡ଼ କଥା ନହେଲେ ବି ଖୁବ୍ ସାମାନ୍ୟ ମଧ୍ୟ ନୁହେଁ; କିନ୍ତୁ ତମେ ଯାଚିଲେ ମଧ୍ୟ ସେ ଟଙ୍କା ମୁଁ ଫେରସ୍ତ ନିଅନ୍ତି ନାହିଁ । କାରଣ ସେଇ ସାମାନ୍ୟ ଚାଳିଶ ଟଙ୍କା ହିଁ ଆମ ଦୁହିଁଙ୍କ ମଧ୍ୟରେ ସମ୍ପର୍କର ଯୋଗସୂତ୍ର ସ୍ଥାପନ କରିଛି । ସେ ସମ୍ପର୍କର ସୂତ୍ରକୁ ମୁଁ ଛିନ୍ନ କରିବାକୁ ଚାହେନା ।

ହିପ୍‌ପିଣୀ ଆଖିକୋଣରେ ମୃଦୁ ହସର ଆଲୋକ ବିଚ୍ଛୁରଣ କରି ଉତ୍ତର ଦେଲା— ଐଶ୍ୱର୍ଯ୍ୟର ମାୟା ତ୍ୟାଗ କରି ଜୀବନରେ ପ୍ରକୃତ ସୁଖର ଅନ୍ୱେଷଣରେ ଦିନେ ଗୌତମ ବୁଦ୍ଧ ରାଜପ୍ରାସାଦ ଛାଡ଼ି ଚାଲିଯାଇଥିଲେ । ପୃଥିବୀର ସେ ହେଉଛନ୍ତି ପ୍ରଥମ ହିପ୍‌ପି । ସେଥିପାଇଁ ଭାରତବର୍ଷ ଆଉ ନେପାଳ ହିପ୍‌ପିମାନଙ୍କର ପ୍ରିୟ ଚାରଣଭୂମି । ସେଇ ଦୃଷ୍ଟିରୁ ଯୀଶୁ, ଶ୍ରୀକୃଷ୍ଣ ମଧ୍ୟ ଜଣେ ଜଣେ ହିପ୍‌ପି । ଶ୍ରୀକୃଷ୍ଣଙ୍କ ହାତରେ ଚିଲମ ନଥିଲା, ଥିଲା ବଂଶୀ । ସେଇ ବଂଶୀର ସ୍ୱରରେ ସେ କେତେ ଗୋପିନୀଙ୍କୁ ସ୍ୱାମୀର କୋଳରୁ କଦମ୍ବ ଗଛ ମୂଳକୁ ଡାକି ଆଣୁଥିଲେ । ଯୌନ-ସ୍ୱାଧୀନତାର ସେ ଥିଲେ ପ୍ରମୂର୍ତ୍ତ ପ୍ରତୀକ । ସେଥିପାଇଁ ଏ ଦେଶ ଆମକୁ ବିଦେଶ ଭଳି ମନେ ହୁଏନାହିଁ ।

ଶ୍ରୀକୃଷ୍ଣ ପ୍ରେମର ପ୍ରତୀକ, କିନ୍ତୁ ଯୌନତାର ପ୍ରତୀକ ନୁହନ୍ତି ବୋଲି ହିପ୍‌ପିଣୀକୁ ମୁଁ ବୁଝାଇବାକୁ ଯାଉଥିଲି । କିନ୍ତୁ ସେ ମତେ ତା'ର ସୁବିଧା ଦେଲାନାହିଁ ।

ଚର୍ଚ୍ଚର ଦେଓ୍ୱାଲ୍‌ରେ ଅଙ୍କିତ ଏକ ଛବି ପ୍ରତି ମୋର ଦୃଷ୍ଟି ଆକର୍ଷଣ କରି କହିଲା— ଏ ଛବିଟା ଲକ୍ଷ୍ୟ କରିଛନ୍ତି ? ଜଣେ ବଳିଷ୍ଠ ପୁରୁଷ ଶିଶୁ ଯୀଶୁଙ୍କୁ କାନ୍ଧରେ ବସାଇ ନଦୀ ପାର କରାଇବାକୁ ନେଉଥିବାର ଛବି । ଏ ଛବି ଦେଖିଲେ ବସୁଦେବ ଶ୍ରୀକୃଷ୍ଣଙ୍କୁ କାନ୍ଧରେ ବସାଇ ନଦୀ ପାର କରାଉଥିବା କଥା ସ୍ମରଣ ହୋଇଯାଏ ନାହିଁ ! ଏ ଛବି ଦେଖିଲେ ମନେହୁଏ ଯୀଶୁ ଓ ଶ୍ରୀକୃଷ୍ଣ ଏକ ଓ ଅଭିନ୍ନ । ରୋମୀୟ ପ୍ରଶାସକ ପିଲାତୁସ୍‌ଙ୍କ ଆଦେଶରେ ଯୀଶୁଖ୍ରୀଷ୍ଟଙ୍କୁ କ୍ରୁଶବିଦ୍ଧ କରାଯାଇଥିଲା; ଶ୍ରୀକୃଷ୍ଣଙ୍କ ପାଦ ତୀରବିଦ୍ଧ ହୋଇଥିଲା ଜରାସନ୍ଧର ତୀରରେ । କି ଆଶ୍ଚର୍ଯ୍ୟ ମେଳ !

ଶିଶୁ ଯୀଶୁଖ୍ରୀଷ୍ଟଙ୍କୁ ତାଙ୍କର ଜଣେ ଅନୁରକ୍ତ ଭକ୍ତ କାନ୍ଧରେ ବସାଇ ନଦୀ ପାର କରାଇବାର ଛବି ମୁଁ ଏଇ ପ୍ରଥମ ଦେଖିଲି । ନିଃସନ୍ଦେହରେ ଶ୍ରୀକୃଷ୍ଣଙ୍କୁ କାନ୍ଧରେ ବସାଇ ବସୁଦେବ ନଦୀ ପାର କରାଉଥିବାର ଛବି ସହ ଅନେକ ପରିମାଣରେ ସାମ୍ୟ ରହିଛି । ଖ୍ରୀଷ୍ଟୀୟ ଚିତ୍ରକଳା ଉପରେ ହିନ୍ଦୁ-ଚିତ୍ରକଳା ପ୍ରଭାବର ଏକ ଅମ୍ଳାନ ଉଦାହରଣ ।

ହିପ୍‌ପିଣୀର ଅନ୍ତର୍ଦୃଷ୍ଟି ପାଇଁ ତାକୁ ମନେ ମନେ ମୁଁ ଧନ୍ୟବାଦ ଦେଲି ।

ବମ ଯୀଶସ୍ ଚର୍ଚ୍ଚ ଆଉ କାଥିଡ୍ରାଲ୍ ଘୂର ଘୂରି ପାଦ ଯେତେବେଳେ କ୍ଲାନ୍ତ ହୋଇଗଲା, ଆମେ ଦୁହେଁ ଗୋଟିଏ ଘାସ ପଡ଼ିଆ ଉପରେ ବସିପଡ଼ିଲୁ । ମୁଁ ଗୋଡ଼ ଲମ୍ୱାଇ ବସିଲି । ହିପ୍‌ପିଣୀ ବିନା ନୋଟିସ୍‌ରେ ମୋ ଗୋଡ଼ ଉପରେ ମୁଣ୍ଡଦେଇ ଚିତ୍ ହୋଇ ଶୋଇପଡ଼ିଲା ।

ମୋ ଦେହରେ ଏକ ଶିହରଣର ଆଲୋଡନ ସଞ୍ଚରିଗଲା । ଜଣେ ବାଦାମୀ ରଙ୍ଗର ପୁରୁଷ ଗୋଡ଼ ଉପରେ ଜଣେ ଶ୍ୱେତାଙ୍ଗିନୀ ମୁଣ୍ଡ ରଖି ଏଭଳି ଶୋଇରହିଥିବାର ଦୃଶ୍ୟ ଦେଖିବାପାଇଁ ଅନେକ ଭ୍ରମଣକାରୀଙ୍କ ଆଖି ଯେ ଈର୍ଷାରେ ଚିକ୍ ଚିକ୍ କରି ଉଠୁଥିବ, ଏକଥା କଳ୍ପନା କଲାମାତ୍ରେ ମୁଁ ଅପ୍ରତିଭ ହୋଇପଡ଼ିଲି । କ୍ଷୀଣ-କଣ୍ଠରେ ପ୍ରତିବାଦ କଲି– ମାଡାମ୍ ! ଏ କଅଣ ହେଉଛି ? ମୋ ଗୋଡ଼ ଉପରେ ମୁଣ୍ଡ ରଖି ଶୋଇଲେ ଯେ ଘାସପଡ଼ିଆର ଏ ସ୍ଥାନଟା ଗୋଟାଏ ପ୍ଲେସ ଅଫ୍ ଟୁରିଷ୍ଟ ଆଟ୍ରାକସନ୍ ହୋଇଯିବ !

ହିପ୍‌ପିଣୀ ରହସ୍ୟମୟ ଭାବରେ ହସି ହସି କହିଲା– ଅନେକ ଦିନ ଟୁରିଷ୍ଟ ହୋଇ ଘୂରିବୁଲିଛନ୍ତି, କିଛି ସମୟ ପାଇଁ ଟୁରିଷ୍ଟ ଆଟ୍ରାକସନ୍ ହୋଇ ଯାଆନ୍ତୁନା ! ଆଃ, କି ଆରାମ୍ !

ସେ କ୍ରମେ କ୍ରମେ ମୋ ଆଣ୍ଠୁ ପାଖରୁ ତା' ମୁଣ୍ଡକୁ ମୋ କୋଳ ଆଡ଼କୁ ଘୁଞ୍ଚାଇ ଆଣିଲା । ତା'ର କଟୁରି-କଟା କେଶଗୁଚ୍ଛରୁ ବିଦେଶୀ-ସାବୁନ୍‌ର ବାସ୍ନା ଆସୁଥିଲା । ସୂର୍ଯ୍ୟକିରଣରୁ ନିଜ ଆଖିକୁ ରକ୍ଷା କରିବା ପାଇଁ ସେ ତା'ର ବାମହାତ ବାହୁକୁ ଆଖି ଉପରେ ଢାଙ୍କିଦେଇଥିଲା । ଫଳରେ ତା'ର ବାମବକ୍ଷ ବେଶୀ ଉଗ୍ର ଭାବରେ ଊର୍ଦ୍ଧ୍ୱମୁଖୀ ହୋଇ ରହିଗଲା ।

ମୁଁ କୌଣସି ସିଦ୍ଧ ମହାପୁରୁଷ ନୁହେଁ । ତା' ଦେହର ଉଷ୍ମ-କୋମଳ ସ୍ପର୍ଶ ମୋ ସ୍ନାୟୁରେ ଶିହରଣ ସୃଷ୍ଟି କରୁଥିଲା । ମୁଁ ନିଜ ଭିତରେ ଏକ ସ୍ୱାୟବିକ ଉତ୍ତେଜନା ଅନୁଭବ କରୁଥିଲି; କିନ୍ତୁ ହିପ୍‌ପିଣୀ ବାମବାହୁରେ ଆଖିକୁ ଘୋଡ଼ାଇ ଖଣ୍ଡେ ଶୀତଳ ବରଫ ଭଳି ମୋ ଗୋଡ଼ ଉପରେ ପଡ଼ିରହିଥିଲା ।

ନା, କୌଣସି ଟୁରିଷ୍ଟ ଆମ ପାଖକୁ ଆସୁ ନଥିଲେ । ଏଭଳି ଦୃଶ୍ୟ ଗୋଆରେ ସମୁଦ୍ର କୂଳରେ ବିରଳ ନୁହେଁ । ଏସବୁ ଦେଖି ଦେଖି ସେମାନଙ୍କ ଦୃଷ୍ଟିଶକ୍ତି ହୁଏତ ଔଜ୍ଜ୍ୱଲ୍ୟ ହରାଇଛି । ମୋର ସନ୍ଦେହ ଅମୂଳକ । ଗୋଟିଏ ସାମାନ୍ୟ କଥାକୁ ମୁଁ ଖୁବ୍ ବେଶୀ ଗୁରୁତ୍ୱ ଦେଇ ବସିଛି ।

ହିପ୍‌ପିଣୀ ଆଖି ବୁଜି ଊର୍ଦ୍ଧ୍ୱମୁଖୀ ହୋଇ ଶୋଇ ଶୋଇ କହିଲା– ଆଇ ଆମ ଥାର୍ଟିଥ୍ରି । ଜାଣନ୍ତିନା ତେତିଶ ବର୍ଷ ବୟସରେ ହିଁ ଯୀଶୁଙ୍କୁ କ୍ରୁଶବିଦ୍ଧ କରାଯାଇଥିଲା !

: ଯୀଶୁଖ୍ରୀଷ୍ଟଙ୍କ ତେତିଶ ବର୍ଷ ବୟସରେ କ୍ରୁଶବିଦ୍ଧ ହେବା ସହିତ ତମକୁ ତେତିଶ ବର୍ଷ ହେବାର ସମ୍ପର୍କ କ'ଣ ? ମତେ ବି ଦିନେ ତେତିଶ ବର୍ଷ ହୋଇଥିଲା । ସୋ ହ୍ୱାଟ୍ ? ମୁଁ ବିସ୍ମୟରେ ପ୍ରଶ୍ନକଲି ।

ସେ ଆଖି ନଖୋଲି ମନ୍ତବ୍ୟ କଲା– ତେତିଶ ବର୍ଷ ବୟସରେ ମରିବା ପାଇଁ ମୋର ଖୁବ୍ ଇଚ୍ଛା । ଆଉ ଏସ୍ଥାନରୁ ସେସ୍ଥାନକୁ ଘୂରି ବୁଲିବାପାଇଁ ପାଦରେ ଶକ୍ତି ନାହିଁ । ହେରୋଇନ୍ ଇଂଜେକ୍‌ସନ୍ ନେଲା ପରେ ମଧ୍ୟ ସ୍ନାୟୁଗ୍ରନ୍ଥି ଉତ୍ତେଜିତ ହେଉନାହିଁ । କୌଣସି ପୁରୁଷ ସହିତ

ଯୌନ ସଙ୍ଗମରେ ଲିପ୍ତ ହେଲେ ମଧ ଉତ୍ତେଜିତ ହେବା ବଦଳରେ ମତେ ଆଜିକାଲି ପ୍ରଥମେ ବୋର୍ ଓ ପରେ କ୍ଳାନ୍ତ ଲାଗେ । ଡ୍ରଗ୍‌ସ ଆଉ ସେକ୍‌ସ– ଏ କେହି ମତେ ଉତ୍ତେଜିତ କରି ପାରନ୍ତି ନାହିଁ । ମୁଁ ବୁଝିଯାଇଛି, ବଞ୍ଚି ରହିବାର ଆବଶ୍ୟକତା ମୋର ଶେଷ ହୋଇ ଆସୁଛି । କିନ୍ତୁ ମରିବା ପାଇଁ ଭୟ । ଆଇ ଆମ୍ ମୋଟାଲି ଆଫ୍ରେଡ୍ ଅଫ୍ ଡେଥ୍ । ହାଉ ଟ୍ରାଜିକ୍ !

କୌଣସି ସୁନ୍ଦରୀ ନାରୀକୁ କୋଳରେ ଶୁଆଇ ତା' ମୁହଁରୁ ତା'ର ମୃତ୍ୟୁକଥା ଶୁଣିବାର ଅସହ୍ୟ ଅଭିଜ୍ଞତା ମୋର ବୋଧହୁଏ ଏଇ ପ୍ରଥମ ଆଉ ଶେଷ । ମୁଁ ତା'ର କଥା ଶୁଣିଲି; କିନ୍ତୁ କିଛି ଉତ୍ତର ଦେଇ ପାରିଲି ନାହିଁ ।

ତା'ର ଦୁଇ ମୁଦ୍ରିତ ଆଖିପତା ଆପେ ଆପେ ଖୋଲିଗଲା । ତା'ର ଦୁଇ ଆଖି ଯେମିତି ହୋଇଗଲା ଦୁଇଟି ତରଙ୍ଗ ଉପରେ ଭାସମାନ, ଦୋଳାୟିତ ନୌକା ।

ହଠାତ୍ ସେ ମୋ ପାଖରେ ଗୋଟିଏ ଅଦ୍ଭୁତ ପ୍ରସ୍ତାବ କରି ବସିଲା– ଆଚ୍ଛା, ଯଦି ମୁଁ ମରିଯାଏ, ନରମାନ୍ ମେଇଲର ଯେପରି ମରଲିନ୍ ମନ୍‌ରୋ ଉପରେ ଗୋଟାଏ ବହି ଲେଖିଥିଲେ, ମୋ ସମ୍ପର୍କରେ ଆପଣ ସେଭଳି ଗୋଟାଏ ବହି ଲେଖିବେ ?

ତା'ର ଆଖିର ନୌକାରେ ବୋଝାଇ ହୋଇଥିବା ସ୍ତୂପ ସ୍ତୂପ ନୀଳ ସ୍ୱପ୍ନ ମୋର ଦୁଇ ଭୀତ ସଂତ୍ରସ୍ତ ଆଖିକୁ ସଂକ୍ରମିତ ହୋଇଆସିଲା ।

ମୁଁ ଡରି ଡରି ଉତ୍ତରଦେଲି– ମୁଁ ଯେଉଁ ସ୍ଥାନ ଭ୍ରମଣ କରେ, ସେ ସ୍ଥାନର ପୃଷ୍ଠଭୂମିରେ ଭ୍ରମଣୋପନ୍ୟାସ ଲେଖେ; କିନ୍ତୁ ଯେଉଁମାନଙ୍କ ସାଙ୍ଗରେ ଭ୍ରମଣ କରେ, ସେ ଟୁରିଷ୍ଟମାନଙ୍କ ସମ୍ପର୍କରେ କିଛି କେବେ ଲେଖେ ନାହିଁ । ତା'ଛଡ଼ା ତମ ବିଷୟରେ ମୁଁ ଅବା ଜାଣେ କ'ଣ ? ଚରିତ୍ର ସହିତ ଏକାତ୍ମ ନହେଲେ ଉପନ୍ୟାସ ଲେଖା ହୁଏନା ।

ହିପ୍‌ପିଣୀ ମୋ କଥାକୁ ବିଶ୍ୱାସ କଲାନାହିଁ ।

କହିଲା– ଆଜିକାଲି ସବୁ ମଣିଷଙ୍କର ସମସ୍ୟା ସେଇ ଗୋଟିଏ– ବଞ୍ଚିବା । ଏଥିରେ ଆଉ ଜାଣିବାର କଅଣ ଅଛି ? ମୁଁ ତ କେମିତି ବଞ୍ଚିବା ପାଇଁ ଚେଷ୍ଟା କରୁଛି ଆପଣ ଦେଖୁଛନ୍ତି ! ଆଉ ଅଧିକ କ'ଣ ଜାଣିବା ଦରକାର ?

ତା'ର ଚୂନା ଚୂନା ମୁଣ୍ଡର କେଶଗୁଡ଼ିକ ହାତ ଆଙ୍ଗୁଠିରେ ସାଉଁଳି ଦେଉ ଦେଉ କହିଲି– ବାଳିକା ! ବହିର ବିଷୟବସ୍ତୁ ହେବା ପାଇଁ କେହି ବଞ୍ଚେ ନାହିଁ । ମାଛ ବଞ୍ଚେ ଜଳରେ, ନାରୀ ବଞ୍ଚେ ତା'ର ନିଜ ସଂସାର ଭିତରେ । ତା'ର ସଂସାର ତା'ର ସ୍ୱାମୀ ଆଉ ସନ୍ତାନକୁ ନେଇ । ମୋର ମନେହେଉଛି, ସଂସାର କରିବାର ବୟସ ତମର ଏପର୍ଯ୍ୟନ୍ତ ସୁଦ୍ଧା ଯାଇନାହିଁ । ଘରକୁ ଖବର ପଠାଇଲେ ତମର ବାପା–ମାଆ ହୁଏତ ଗୋଟାଏ ସ୍ୱତନ୍ତ୍ର ବିମାନ ପଠାଇ ତମକୁ ଲସ୍ ଏଞ୍ଜେଲସ ନେଇଯିବେ । ଆମେରିକାର ତେତିଶ ବର୍ଷ ବୟସ ଅବା ଏମିତି କ'ଣ ? ଜଣେ ଭାରତୀୟ ଲେଖକର ଉପନ୍ୟାସରେ ନାୟିକା ହେବା ଅପେକ୍ଷା, ଜଣେ ଆମେରିକାନ୍ ସନ୍ତାନର ଜନନୀ ହେବା ଅଧିକ ଏକ୍‌ସାଇଟିଂ...

ମୋର ପ୍ରସ୍ତାବ ଶୁଣି ହିପ୍‌ପିଣୀ ମୁହଁର ମାଂସପେଶୀରେ କୌଣସି ଚାଞ୍ଚଲ୍ୟ ଦେଖାଗଲା ନାହିଁ ।

ସେ ଅନାସକ୍ତ ଭାବରେ ଉତ୍ତର ଦେଲା– ମରଲିନ୍ ମନ୍‌ରୋଙ୍କ ଗୋଟିଏ ପରେ ଗୋଟିଏ ବିବାହ କାହିଁକି ପୋଡ଼ି ପାଉଁଶ ହୋଇଯାଇଥିଲା, ମନେଅଛି ତ ? ତାଙ୍କର ସ୍ୱାମୀ ମିଷ୍ଟର ଡିମାଗିଓ ଖାଇ ବସିଲାବେଳେ ମନ୍‌ରୋଙ୍କ ସାଙ୍ଗରେ ଗପସପ ନକରି ଟେଲିଭିଜନକୁ ଚାହିଁ ରହୁଥିଲେ । ସାଙ୍ଗ ହୋଇ ଖାଇ ବସିଲାବେଳେ ମଧ୍ୟ ସ୍ୱାମୀ ନିଜର ସ୍ତ୍ରୀ ସହିତ କଥାବାର୍ତ୍ତା ନକରି ଟେଲିଭିଜନ୍ ଯନ୍ତ୍ରକୁ ଏକ ଲୟରେ ଚାହିଁରହିଥିବ, ଏକଥା ମନ୍‌ରୋ ସହ୍ୟ କରିପାରି ନଥିଲେ । ଅଳ୍ପ କେତେ ମାସପରେ ତାଙ୍କର ବିବାହ ବିଚ୍ଛେଦ ଘଟିଥିଲା । ଆମେରିକାନ୍ ପୁରୁଷକୁ ତା'ର ସ୍ତ୍ରୀ ସନ୍ତାନ ଉତ୍ପାଦନର ଯନ୍ତ୍ର ଭାବରେ ବ୍ୟବହାର କରିପାରେ; କିନ୍ତୁ ତାକୁ ଡାଇନିଂ ଟେବୁଲ୍‌ରେ କଥା କୁହାଇ ପାରେ ନାହିଁ ! ଏଇ ହେଉଛି ଆଧୁନିକ ଜୀବନର ଟ୍ରାଜେଡି । ସୁଖ ଆଉ ଉତ୍ତେଜନା ପାଇଁ ମତେ କଅଣ ସେଇ ଭୁଲ ପଛରେ ଧାଇଁବାକୁ ହେବ ? ଫ୍ରାଙ୍କ୍‌ଲି ଆଇ କାନ୍‌ଟ୍ !

ମୁଁ ବିଦ୍ରୋହିଣୀକୁ ଚାହିଁ ଦେଖିଲି, ତା'ର ଦୁଇ ଆଖି ସ୍ୱପ୍ନବାହୀ ନୌକା ନୁହେଁ, ଏକ ଜିଜ୍ଞାସୁ ପ୍ରଶ୍ନବାଚକ ଚିହ୍ନରେ ପରିଣତ ହୋଇଯାଇଛି ।

ମୁଁ ଧୀରେ ଧୀରେ ଦୁଇ ହାତରେ ତା' ମୁଣ୍ଡକୁ ଘାସ ପଡ଼ିଆ ଉପରକୁ ଖସାଇଦେଇ ଗୋଡ଼କୁ ନିଜ ପାଖକୁ ଫେରସ୍ତ ନେଇଆସିଲି ।





ପାଞ୍ଜିମ୍ ସହରଠାରୁ ପନ୍ଦର କିଲୋମିଟର ଦୂରରେ କାଲାନ୍‌ଗୁଟେ ବିଚ୍, ବେଳାଭୂମି ।

ବେଳାମାଳିନୀ ଗୋଆର ସବୁଠାରୁ ଲାବଣ୍ୟମୟୀ ବେଳାଭୂମି ଏଇ କାଲାନ୍‌ଗୁଟେ । ଧାଡ଼ି ଧାଡ଼ି ନଡ଼ିଆଗଛ ଆଉ ଆମ୍ବ, ଅନାରସ୍ ଗଛର ଗହଳ ଛାଇ ଅତିକ୍ରମ କରି ଏଇ ବେଳାରେ ପାଦଦେଲା ମାତ୍ରେ ଏକ ଗଭୀର ପ୍ରଶାନ୍ତିରେ ମନ ଭରିଯାଏ ।

ଆମେ ଦୁହେଁ କାଲାନଗୁଟେର ସମୁଦ୍ର ତୀରରେ ପହଞ୍ଚିଲା ବେଳକୁ ଅପରାହ୍ନର ଆଲୋକ କ୍ରମଶଃ ମଳିନ ପଡ଼ିବାକୁ ଆରମ୍ଭ କରିଥିଲା ମାତ୍ର । ସେତେବେଳକୁ ବେଳାଭୂମିରେ ମାଳ ମାଳ ହିପ୍‌ପି-ହିପ୍‌ପିଣୀ । ବାହୁରେ ବାହୁ ଛନ୍ଦି ମୁକ୍ତ ବିହଙ୍ଗ-ବିହଙ୍ଗୀ ଭଳି ସେମାନେ ଘୂରିବୁଲୁଥିଲେ । ଆମକୁ ଦେଖିବା ମାତ୍ରେ ଗୋଟାଏ ଶ୍ୱେତାଙ୍ଗ-ଶ୍ୱେତାଙ୍ଗିନୀ ଯୋଡ଼ି ବେଳାର ବାଲୁବନ୍ତ ଉପରକୁ ମାଡ଼ିଆସୁଥିବା ଆରବ ସାଗରର ପ୍ରମତ୍ତ ତରଙ୍ଗମାଳା ଭଳି ଛୁଟିଆସିଲେ ଆମ ଆଡ଼କୁ ।

: ୟାର୍ ! ୟୁ ଆର୍ ହିଅର୍ ? – ହିପ୍‌ପି ଜଣକ ବିସ୍ମୟରେ ପ୍ରଶ୍ନ କଲା । ହିପ୍‌ପିଣୀ ମୁଣ୍ଡ ହଲାଇ ମୋ ସହିତ ପରିଚୟ କରାଇଦେଲା– ଏଇ ହେଉଛି ପଲ୍ ଏବଂ ସେ ତା'ର ବାନ୍ଧବୀ ...

: ରାଧା ! – ମୁଁ ତା'ର ଅସମ୍ପୂର୍ଣ୍ଣ ବାକ୍ୟ ପୂର୍ଣ୍ଣ କରିଦେଲି ।

ପଲ୍‌ର ବାନ୍ଧବୀ ମୁହଁରେ ଈର୍ଷୁକ ବିସ୍ମୟର ଏକ ବିଚିତ୍ର ଭଙ୍ଗୀ ଫୁଟିଉଠିଲା । ନିଜ ନାସାଗ୍ରରେ ଏକ ଅସହିଷ୍ଣୁଭଙ୍ଗୀ ସୃଷ୍ଟି କରି ସେ ପଲ୍‌କୁ ପଚାରିଲା– ଆର୍ ଦେ ମ୍ୟାରେଡ୍ ?

ଅର୍ଥାତ୍ ମୋର ସହଜଶ୍ରେଣୀ ହିପ୍‌ପିଣୀ ମତେ ବିବାହ କରିଛି !

ମୁଁ ପ୍ରତିବାଦ କଲି– ମାଡାମ୍ ! କୌଣସି ବିଦେଶିନୀ ପାସ୍‌ପୋର୍ଟର ସମୟ ବାତିଲ୍ ହୋଇଯାଇଥିବା ଯୋଗୁ ପୋଲିସର ବିଷଦୃଷ୍ଟିରେ ନପଡ଼ିବା ଯାଏ ଇଣ୍ଡିୟାନ୍‌ଙ୍କୁ ବିବାହ କରିବା କଥା ଭାବନ୍ତି ନାହିଁ । କାରଣ ଆପଣମାନେ ପ୍ରେମ ପାଇଁ ବିବାହ କରନ୍ତି ନାହିଁ; ସାମୟିକ ଭାବରେ ଭାରତୀୟ ନାଗରିକତ୍ୱ ଲାଭ କରିବା ପାଇଁ ପୋଷାକ ବଦଳାଇବା ଭଳି ବନ୍ଧୁ-ବଦଳ କରିଥାଆନ୍ତି । ଆଉ ମୋର ସହଯାତ୍ରିଣୀଙ୍କ ପାସପୋର୍ଟ ଇଣ୍ଡିଆରେ ରହିବା ପାଇଁ ଆହୁରି ଛଅମାସ ବଳବତ୍ତର ରହିଛି । ସେ କେଉଁ ଦୁଃଖରେ ମତେ ବିବାହ କରିବେ ?

ମୋର କଥା ଶୁଣି ମୋର ସହଯାତ୍ରିଣୀ ହିପ୍‌ପିଣୀ ଉଚ୍ଚ କଣ୍ଠରେ ହସିଉଠିଲା । କିନ୍ତୁ ପଲ୍‌ର ବାନ୍ଧବୀ କିଛିନବୁଝି ପାରି ପଲ୍‌ର ମୁହଁକୁ ବଲ୍ ବଲ୍ କରି ଚାହିଁରହିଲା । ସମ୍ଭବତଃ ଫରାସୀ-ଲଳନା ମୋର ଇଣ୍ଡିୟାନ ଇଂରେଜୀ ଉଚ୍ଚାରଣ ବୁଝିପାରିଲା ନାହିଁ ।

ଜଣେ ଶ୍ୱେତାଙ୍ଗିନୀ ଆଉ ଜଣେ ବାଦାମୀ ରଙ୍ଗର ପୁରୁଷ ସାଙ୍ଗରେ ଘୂରୁଛି, ଏକଥା ଅନେକ ଶ୍ୱେତାଙ୍ଗ, ଶ୍ୱେତାଙ୍ଗିନୀ ସହ୍ୟ କରିପାରନ୍ତିନାହିଁ । ବର୍ଣ୍ଣ-ବିଦ୍ୱେଷ ସେମାନଙ୍କର ହୁଏତ ରକ୍ତଗତ !

ପଲ୍ କିନ୍ତୁ ଭିନ୍ନ ଧାତୁରେ ଗଢ଼ା ମଣିଷ । ତା'ର ମୁହଁଟି ଯେପରି କିଶୋର ସୁଲଭ ଚପଳତାରେ ଛଳଛଳ, ହୃଦୟ ବୋଧହୁଏ ସେହିପରି ସରଳତାରେ ଢଳଢଳ ।

ସେ ତା'ର ବାନ୍ଧବୀକୁ ବୁଝାଇଦେଲା, ମୁଁ ହିପ୍‌ପିଣୀର ସ୍ୱାମୀ ନୁହେଁ, ବନ୍ଧୁ । ତା'ର ଆର୍ଥିକ ଦୁରବସ୍ଥା ସମୟରେ ତାକୁ ସାହାଯ୍ୟ କରିଛି ।

ତଥାପି ସେ ଫରାସୀ-ଲଳନାର ମନ ସମ୍ଭବତଃ ସନ୍ଦେହ-ମୋଚନ ହେଲାନାହିଁ । କିନ୍ତୁ ସେଥିରେ ଅବା ମୋର ଯାଏ-ଆସେ କେତେ ? ବସ୍‌ରେ ଗୋଆ ଆସିବା ବାଟରେ ମୋ ସହିତ ଲିପିକୁ ଏକାକିନୀ ଦେଖି ହିପ୍‌ପିଣୀ ଆମକୁ ସ୍ୱାମୀ-ସ୍ତ୍ରୀ ବୋଲି ସନ୍ଦେହ କରିଥିଲା । ସେଇ ସନ୍ଦେହ ତାକୁ କେନ୍ଦ୍ର କରି ଯଦି ପଲ୍‌ର ବାନ୍ଧବୀ ମନରେ ସୃଷ୍ଟିହୋଇଥାଏ, ତାହାହେଲେ ତାକୁ ଖୁବ୍ ବେଶୀ ଦୋଷ ଦିଆଯାଇ ପାରେନା ।

ପଲ୍‌କୁ ମୁଁ ପଚାରିଲି– ତମେ କେଉଁ ହୋଟେଲ୍‌ରେ ରହୁଛ ?

ନିଜ ଦୁଇ କାନ୍ଧକୁ ସାମାନ୍ୟ ଦୋହଲାଇ ଦେଇ ସେ ଉତ୍ତରଦେଲା– ହୋଟେଲ ନୁହେଁ, କଟେଜ୍‌ରେ ରହୁଛୁ । ଅଞ୍ଜୁନା ଗ୍ରାମର ଗୋଟିଏ କଟେଜ୍– ମାସକୁ ଭଡ଼ା ମାତ୍ର ଏକ ଶହ ଟଙ୍କା ରୁପେୟା ! ପୃଥିବୀରେ ଏତେ ଶସ୍ତାରେ ଆଉ ବୋଧହୁଏ କେଉଁଠି ଘର ମିଳେନାହିଁ । ଆପଣ ଭାରତବର୍ଷର କେଉଁ ଅଞ୍ଚଳରୁ ଆସିଛନ୍ତି ?

: ପୂର୍ବାଞ୍ଚଳ, ଓଡ଼ିଶାରୁ । – ମୁଁ ସଂକ୍ଷେପରେ ଉତ୍ତରଦେଲି ।

: ଆପଣଙ୍କ ସହିତ ପରିଚିତ ହୋଇ ଖୁବ୍ ଖୁସିହେଲି । ଆମ କଟେଜ୍‌ରେ ଆସନ୍ତୁ ଆଜି ରାତ୍ରି ଯାପନ କରିବେ । ଆମେ ଗୋଟିଏ କୋଠରିରେ ରହୁଛୁ; ଆମ ଗୋଟାଏ କୋଠରି ଖାଲି ଅଛି । ରହିବା ପାଇଁ କିଛି ଅସୁବିଧା ହେବ ନାହିଁ । – ସେ ମତେ ନିମନ୍ତ୍ରଣ କଲା ।

ପଲ୍‌ର ଆମନ୍ତ୍ରଣରେ କିଛି ପରିମାଣରେ ଆନ୍ତରିକତା ଥିଲେ ବି ତା'ର ବାନ୍ଧବୀ ମୁହଁରେ ସନ୍ଦେହ, ଅବିଶ୍ୱାସ ଘନୀଭୂତ ହୋଇ ରହିଥିଲା । ମତେ ଜଣେ ଶ୍ୱେତାଙ୍ଗିନୀ ସହିତ ଘନିଷ୍ଠ ହୋଇଥିବା ଦେଖି ସେ ଯେ ଖୁସି ହୋଇନି; ସେ କଥା ବୁଝିବାରେ ମୋର କିଛି ଅସୁବିଧା ହୋଇ ନଥିଲା ।

ମୁଁ ପଲ୍‌କୁ ତା'ର ଆମନ୍ତ୍ରଣ ପାଇଁ ଧନ୍ୟବାଦ ଜଣାଇ କହିଲି– ତମର ବାନ୍ଧବୀ ହୁଏତ ଆମର ଉପସ୍ଥିତି ସହ୍ୟ କରିପାରିବେ ନାହିଁ । ତେଣୁ ତମର ନିମନ୍ତ୍ରଣ ରକ୍ଷା କରି ପାରୁନି ବୋଲି କିଛି ମନରେ ଭାବନାହିଁ ।

ପଲ୍ ଖୁବ୍ ଲଜ୍ଜିତ ହେବାଭଳି ମୁଖଭଙ୍ଗୀ କରି କହିଲା— ରାଧା ଖୁବ୍ ଭାବପ୍ରବଣ ଝିଅ । ଆପଣଙ୍କ ପ୍ରତି ତା'ର କୌଣସି ଅବିଶ୍ୱାସ ନାହିଁ; କିନ୍ତୁ ଆପଣଙ୍କ ମାର୍କିନ୍ ଗାର୍ଲଫ୍ରେଣ୍ଡକୁ ସେ ସହ୍ୟ କରିପାରେନା । ସେଇ ଚିରନ୍ତନ ନାରୀ ସୁଲଭ ଈର୍ଷା !

ମୋର ସହଯାତ୍ରିଣୀ ହିପ୍‌ପିଣୀ ମୋର ହାତ ଧରି ଟାଣିଲା ।

: ମିଷ୍ଟର ମେଇଲର୍ ! ଏଇ ସମୁଦ୍ର ଗର୍ଭରେ ସୂର୍ଯ୍ୟ ଅସ୍ତ ଯାଉଛି । କି ସୁନ୍ଦର ଦୃଶ୍ୟ । ଆସନ୍ତୁ ଯିବା ।

ସେ ମତେ ଏକପ୍ରକାର ଦୂରକୁ ଟାଣିନେଲା । ପଲ୍ କାନ୍ଧରେ ମୁଣ୍ଡ ରଖି ସେଇ ଫରାସୀ ଲଳନା ଆମ ଆଡ଼କୁ ଏପରି ଘୃଣିତ ଦୃଷ୍ଟି ନିକ୍ଷେପ କଲା, ଯାହା ଲକ୍ଷ୍ୟ କରି ମୁଁ ଗଭୀର ଅସ୍ୱସ୍ତିରେ ଶିହରିଉଠିଲି ।

: ଗୋଟାଏ କଞ୍ଚା ଡାହାଣୀ.... ଦେଖିବେ ପଲ୍‌କୁ ସେ ଜିଅନ୍ତା ଖାଇଯିବ । — ହିପ୍‌ପିଣୀ ପଲ୍‌ର ବାନ୍ଧବୀ ଉଦ୍ଦେଶ୍ୟରେ ଅପ୍ରତ୍ୟାଶିତ ଭାବରେ ବିକ୍ଷୋଦ୍‌ଗାର କରି ଜୋର୍‌ରେ ଜୋର୍‌ରେ ନିଃଶ୍ୱାସ ନେବାକୁ ଲାଗିଲା । ତା' ଆଖିରେ କେଇବିନ୍ଦୁ ଲୁହ ମଧ୍ୟ ଛଳ ଛଳ ହେଉଥିଲା ।

ମୁଁ ଏଭଳି ଏକ ପରିସ୍ଥିତି ପାଇଁ ଆଦୌ ପ୍ରସ୍ତୁତ ନଥିଲି ।

'ଯୁଦ୍ଧ କର ନାହିଁ; ପ୍ରେମ କର' ବୋଲି ସ୍ଲୋଗାନ୍ ଦେଇ ସେମାନେ ନିଜର ପରିବାର, ସମାଜ, ସ୍ୱଦେଶ ଛାଡ଼ି ଆସିଥିଲେ ସୁଦ୍ଧା ସେମାନଙ୍କ ଭିତରେ ଛୋଟ ଛୋଟ ସ୍ୱାର୍ଥ ପାଇଁ ଯେ ଯୁଦ୍ଧ ଲାଗିଯାଏ; ସେ କଥା ଲକ୍ଷ୍ୟ କରି ମୋ ମୁହଁ ଶୁଖିଯାଇଥିଲା ।

: ତମେ କ'ଣ ପଲ୍‌କୁ ଭଲପାଅ ? ତା' ସହିତ ରହିବାକୁ ଚାହଁ ? — ମୁଁ ତାକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ପ୍ରଶ୍ନ କଲି ।

: ନା, ନା, ମୁଁ କାହାକୁ ଭଲପାଏ ନାହିଁ । ମୁଁ କେବଳ ନିଜକୁ ଭଲପାଏ । ନିଜକୁ ଭଲପାଏ ବୋଲି ନିଜକୁ ଧ୍ୱଂସ କରିବାକୁ ଚାହେଁ । କିନ୍ତୁ ମତେ କେହି ଅପମାନିତ କରିବ, ଏକଥା ମୁଁ ସହ୍ୟ କରିପାରେ ନାହିଁ । — ହିପ୍‌ପିଣୀ ପ୍ରତିବାଦ କଲା ।

: ତାହାହେଲେ ପଲ୍‌କୁ ତା'ର ବାନ୍ଧବୀ କଞ୍ଚା ଖାଇଯିବ କି ନାହିଁ ସେଥିପାଇଁ ତମର ଚିନ୍ତା କାହିଁକି ? ନିଜକୁ ଭଲ ପାଇବା ଅର୍ଥ ନିଜକୁ ଧ୍ୱଂସ କରିବା ନୁହେଁ; ନିଜକୁ ସୁଖୀ କରିବା । ତମେ ଯଦି ନିଜକୁ ଭଲପାଅ, ନିଜକୁ ସୁଖୀ କରିବାକୁ ଚାହୁଁଥାଅ ତା'ହେଲେ ଅନ୍ୟକୁ ଈର୍ଷା କରନାହିଁ । — ମୁଁ ତାକୁ ସାନ୍ତ୍ୱନା ଦେଲି ।

କିନ୍ତୁ ସେତେବେଳକୁ ଅପମାନ-ଜର୍ଜରିତ ତା'ର ଦେହ କ୍ରନ୍ଦନର ଉଚ୍ଛ୍ୱାସରେ ଭାଙ୍ଗିପଡ଼ିଥିଲା । ବେଳାଭୂମିର ବାଲି ଉପରେ ବସିପଡ଼ି ସେ ମୋ କାନ୍ଧରେ ମୁହଁ ରଖି କାନ୍ଦିଉଠିଲା ।

ହଜାର ହଜାର କିଲୋମିଟର ଦୂରର ଜଣେ ବିଦେଶିନୀ ମୋ କାନ୍ଧରେ ମୁଣ୍ଡ ରଖି ଅଶ୍ରୁତର୍ପଣ କରୁଛି; ତା'ର ଆଖିର ଲୁହରେ ମୋ ହାୱାଇନ୍ ଶାର୍ଟ ଭିଜିଯାଉଛି, ଏକଥା ଲକ୍ଷ୍ୟ କରି ମୁଁ ବିସ୍ମୟରେ ବିମୂଢ଼ ହୋଇଗଲି ।

କିଛି ସମୟ ପରେ ନିଜକୁ ସମ୍ଭାଳି ନେଇ ସେ କହିଲା– ବେଳେବେଳେ ମୁଁ ନିଜକୁ ଠିକ୍ ବୁଝିପାରେ ନାହିଁ । ମୋ ମୁଣ୍ଡ ଭିତରେ ଥିବା ଯନ୍ତ୍ରସବୁ ହଠାତ୍ ଅକାମୀ ହୋଇଗଲା ଭଳି ଲାଗେ । ମନେହୁଏ ଗୋଟାଏ କଳା ପୋଷାକ ପିନ୍ଧିଥିବା, ଚନ୍ଦାମୁଣ୍ଡିଆ ଲୋକ ମତେ ଧରିନେବାକୁ ଆସୁଛି । ସେ ଲୋକଟାର ମୁହଁ ମୁଁ ଦେଖି ପାରେ ନାହିଁ । କିନ୍ତୁ ମୁଁ ଜାଣେ ସେ ଲୋକଟାର ନାମ ହେଉଛି ଡେଥ୍... ମୃତ୍ୟୁ !

କୌଣସି ଏକ ବିଦେଶୀ ଚଳଚ୍ଚିତ୍ରରେ ମୁଁ ମଧ୍ୟ ମୃତ୍ୟୁର ଦେବତାକୁ ଏଇଭଳି ବେଶପୋଷାକରେ ଦେଖିଥିବା କଥା ମୋର ମନେପଡ଼ିଲା । ସେ ଛବିରେ ଲଣ୍ଡିତ ମସ୍ତକ, କଳା ପୋଷାକ ପରିହିତ ମୃତ୍ୟୁ ଯେତେବେଳେ ମାରିବାକୁ ଯାଉଥିବା ଲୋକ ପାଖରେ ପହଞ୍ଚିଲା; ଲୋକଟି କହିଲା – ଜାଣେ, ମତେ ତମେ ନେଇଯିବାକୁ ଆସିଛ । ତମ ସହିତ ଯିବା ପାଇଁ ମୋର ଆପତ୍ତି ନାହିଁ । କିନ୍ତୁ ଯିବା ଆଗରୁ ତମ ସହିତ ମୁଁ ତାସ୍ ଖେଳିବାକୁ ଚାହେଁ । ରାଜି ?

କଳାପୋଷାକ ପିନ୍ଧିଥିବା ଲଣ୍ଡିତ-ମସ୍ତକର ତାସ୍ ଖେଳିବାର ପ୍ରବଳ ନିଶା । ସେ ରାଜିହୋଇଗଲା । ମୃତ୍ୟୁମୁଖୀ ମଣିଷ ଆଉ ମୃତ୍ୟୁଦେବତା ମଧ୍ୟରେ ଆରମ୍ଭ ହୋଇଗଲା ତାସ୍ ଖେଳ । କିଛି ସମୟ ପରେ ଲୋକଟି ବିରକ୍ତ ହୋଇ କହିଲା– ନା, ଆଉ ଖେଳିବାକୁ ଭଲ ଲାଗୁନି । ଖେଳ ଏତିକି ଥାଉ । ଚାଲ, ମୁଁ ତମ ସାଙ୍ଗରେ ଯାଏ । ମୋ ଖେଳ ସରିଗଲା ।

କିନ୍ତୁ କଳା ପୋଷାକ ପିନ୍ଧିଥିବା ସେଇ ଚନ୍ଦାମୁଣ୍ଡ ବିଶିଷ୍ଟ ମୃତ୍ୟୁର ଦେବତା ମନରେ ସେତେବେଳେ ଖେଳିବାର ନିଶା ଲାଗିଯାଇଛି । ସେ ତାସ୍ ଛାଡ଼ି ଉଠିବାକୁ ନାରାଜ୍ । ବୁଝିଲ ?

ହିପ୍‌ପିଣୀ ମୋ ମୁହଁରୁ ମୃତ୍ୟୁ ଦେବତାର ଖେଳର ନିଶା କଥା ଶୁଣି ହସିଉଠିଲା ।

ତା'ପରେ ହଠାତ୍ ଭୁଲିଯାଇଥିବା ଗୋଟାଏ କଥା ମନେପଡ଼ିଲା ଭଳି ଚମକିଉଠି, ପିଠିରେ ଝୁଲୁଥିବା ତା'ର ଥଳିରୁ ଗୋଟାଏ ଚିଲମ କାଢ଼ିଲା । ତା' ଭିତରେ ଗ୍ରାସ୍ ଭର୍ତ୍ତି କରି ନିଆଁ ଧରାଇଲା ।

ମତେ ଲକ୍ଷ୍ୟ କରି ଗୁଣୁ ଗୁଣୁ ହୋଇ କହିଲା– ଆପଣ ଠିକ୍ ମନେପକାଇଦେଇଛନ୍ତି । ନିଶା ହିଁ ମଣିଷକୁ ବଞ୍ଚାଇ ରଖେ । ସେ ମୃତ୍ୟୁମୁଖୀ ମଣିଷ ମୃତ୍ୟୁଦେବତାକୁ ଖେଳର ନିଶାରେ ମାତାଲ୍ କରିଦେଇ ନଥିଲେ ତାକୁ ସାଙ୍ଗେ ସାଙ୍ଗେ ସେଇ କଳା ପୋଷାକପିନ୍ଧା ଚନ୍ଦାମୁଣ୍ଡ, ମୁଖହୀନ ମୃତ୍ୟୁ ଦେବତାର ପଛେପଛେ ସାଙ୍ଗେସାଙ୍ଗେ ମୁଣ୍ଡ ତଳକୁ ଚାଲିବାକୁ ପଡ଼ିଥାଆନ୍ତା ।

ତା'ପରେ ଚିଲମ ମୋ ଆଡ଼କୁ ବଢ଼ାଇଦେଇ କହିଲା– ଆପଣ ପ୍ରଥମେ ଏଥିରେ ଓଠ ଲଗାନ୍ତୁ । ତା'ପରେ ମୁଁ । ନା, କିଛି ଖରାପ ଲାଗିବ ନାହିଁ । ଖାଣ୍ଟି ଜିନିଷ, ଗ୍ରାସ୍ । ମରଜୁଆନା । କିଛି ଭେଜାଲ ମିଶିନି ।

ଏ ବିଦେଶିନୀ କାହୁଁ ଜାଣିବ ଯେ ସିଗାରେଟ୍ ଭିନ୍ନ ଅନ୍ୟ କୌଣସି ଧୂଆଁ ଖାଇବାର ଅଭ୍ୟାସ ନାହିଁ ବୋଲି ମୁଁ ଇତସ୍ତତଃ ହେଉଛି ! ମରଜୁଆନାର ଗ୍ରାସ୍ ଅସଲି କି ନକଲି ସେଥିପାଇଁ ମୋର ଦୁଶ୍ଚିନ୍ତା ନାହିଁ ।

କିନ୍ତୁ ହିପ୍‌ପିଣୀ ସହିତ ମିଶିବ; ଚିଲମରୁ ଗ୍ରାସ୍‌ର ଧୂଆଁ ଗିଳିବ ନାହିଁ, ଏକଥା କହିଲେ କିଏ ଶୁଣିବ ?

ମୁଁ ସନ୍ତର୍ପଣରେ ହିପ୍‌ପିଣୀ ହାତରୁ ଚିଲମ ନେଇ ସାମାନ୍ୟ ଧୂମ ଶୋଷଣ କଲି । ଆଗରୁ ଥରେ ଅଧେ ନିଶାଖୋର ବନ୍ଧୁମାନଙ୍କ ସହିତ ବାଜି ରଖି ଗଞ୍ଜେଇର ଧୂଆଁ ଟାଣିଥିଲି । ଗ୍ରାସ୍‌ର ଧୂଆଁ ତା' ତୁଳନାରେ କିଛି ପରିମାଣରେ ବରଂ କୋମଳ ମନେହେଲା । ଗ୍ରାସ୍ ଭଳି କିଛି ବିଷାକ୍ତ ପଦାର୍ଥ ନୁହେଁ– ମନେ ମନେ ନିଜକୁ ସାନ୍ତ୍ୱନା ଦେଇ ଚିଲମ ଫେରାଇ ଦେଲି ହିପ୍‌ପିଣୀକୁ ।

ସେ ଚିଲମରେ ଗୋଟାକ ପରେ ଗୋଟାଏ ଲମ୍ବା ଟାଣ ଦେଇ ଧୂଆଁ ପିଇଗଲା । କିଛି ସମୟ ପରେ ଆଖିପତା ତା'ର ଯୋଡ଼ି ହୋଇ ଆସୁଥିବା ଭଳି ମନେହେଲା । କିଛି କ୍ଷଣ ଆଗରୁ ତା' ମୁହଁରେ କ୍ରନ୍ଦନର ଯେଉଁ କରୁଣତା ଏକ ଅସହାୟ ଭାବ ସୃଷ୍ଟିକରିଥିଲା, ସେ କାରୁଣ୍ୟ କୁଆଡ଼େ ଧୋଇହୋଇଗଲା । ତା'ର ମୁହଁର ମାଂସପେଶୀରେ ଫୁଟିଉଠିଲା ଏକ ଉଦାସୀନ ଗାମ୍ଭୀର୍ଯ୍ୟ ।

ସନ୍ଧ୍ୟାର ଅନ୍ଧକାର ବେଳାଭୂମିକୁ ଗ୍ରାସ କରିଯାଇଥିଲା । ଅଳ୍ପ ଦୂରରେ ଜଳୁଥିବା ବିଜୁଳି ଆଲୁଅ ସେଇ ଘନୀଭୂତ ଅନ୍ଧାରକୁ ଆଲୋକିତ କରୁଥିଲା ସାମାନ୍ୟ ମାତ୍ର ।

ଅଳ୍ପ ଦୂରରୁ ଗିଟାରର ସ୍ୱରରେ ରକ୍ ସଙ୍ଗୀତର ଆବାଜ ଭାସିଆସୁଥିଲା, Make the world a flower garden, not battle field !

ପୃଥିବୀକୁ ଏକ ସୁରଭିତ ଫୁଲ ବଗିଚାରେ ପରିଣତ କର, ଯୁଦ୍ଧକ୍ଷେତ୍ର କରନାହିଁ !

ସଙ୍ଗୀତର ଭାବ ମୋ ମନରେ ଏକ ସ୍ନିଗ୍ଧ ଶିହରଣ ସୃଷ୍ଟି କରିଦେଲା । ସତକୁ ସତ ଯଦି କୌଣସି ଦିନ ଏ ପୃଥିବୀ ଏକ ରକ୍ତାକ୍ତ ରଣାଙ୍ଗନ ନହୋଇ ନାନା ରଙ୍ଗ ଫୁଲରେ ମହକୁଥିବା ପୁଷ୍ପୋଦ୍ୟାନରେ ପରିଣତ ହୋଇଯାଆନ୍ତା !

ଧୂମପାୟୀ ହିପ୍‌ପିଣୀକୁ ଲକ୍ଷ୍ୟ କରି କହିଲି– ଚାଲ, ସମୁଦ୍ରକୂଳରେ ଟିକିଏ ବୁଲିଆସିବା ।

ସେ ଢୁଲୁ ଢୁଲୁ କରି ମତେ ଚାହିଁ କହିଲା– ମୋ ଆଣ୍ଠୁରେ ଆଉ ଉଠିବାପାଇଁ ଶକ୍ତି ନାହିଁ । ଆପଣ ଘୁରିଆସନ୍ତୁ । ମୁଁ ଏଇଠି ବିଶ୍ରାମ ନେଉଛି । ପୃଥିବୀ କମଳା ଲେମ୍ବୁଭଳି ଗୋଲ୍ । ଆପଣ ଘୁରି ଘୁରି ପୁଣି ଏଠାକୁ ଫେରିଆସିବେ ।

ହିପ୍‌ପିଣୀର କଥାରେ କିଛି ପରିମାଣରେ ଦାର୍ଶନିକତାର ସ୍ପର୍ଶ ଥିଲା । ନିଶାର ଅକ୍ତିଆର୍‌ରେ ଥିବା ସମୟରେ ବେଳେବେଳେ ସେ ଏମିତି କେତେ କଥା କହେ, ଯାହାକୁ ମନର ନୋଟ୍‌ବୁକ୍‌ରେ ଟିପିନେବା ପାଇଁ ଲୋଭ ହୁଏ । ମନେହୁଏ ଏଇସବୁ କଥା ପରେ କେବେ ଉପନ୍ୟାସ ଲେଖିଲାବେଳେ ହୁଏତ କାମରେ ଆସିବ ।

ମୁଁ ଲଘୁ ପଦକ୍ଷେପରେ ବେଳାଭୂମି ପରିକ୍ରମା କରିବାକୁ ଲାଗିଲି ।

ଯୁଦ୍ଧକ୍ଷେତ୍ରରେ ମୁମୂର୍ଷୁ ଆହତ ସୈନିକଙ୍କ ଭଳି ବହୁ ଦେଶୀ, ବିଦେଶୀ ପର୍ଯ୍ୟଟକ କାଲାନ୍‌ଗୁଟେ ବେଳାଭୂମିର ସୁନେଲି ବାଲିରେ ଲୋଟିପଡ଼ିଛନ୍ତି । କେହି ସିଗାରେଟ୍ ଟାଣୁଛି, କେହି ଚିଲମ୍ ! ଗୋଟିଏ ଗୋଟିଏ ଜାଗାରେ ପାଞ୍ଚ ସାତଜଣ ହିପ୍‌ପି-ହିପ୍‌ପିଣୀ ଗୋଲାକାର ବୃତ୍ତ କରି ବସିଛନ୍ତି ଆଉ ଗୋଟିଏ ଚିଲମକୁ ଭାଗ କରି ଓଠରେ ଲଗାଉଛନ୍ତି । ଅପରିଚ୍ଛନ୍ନ ପୋଷାକ, ଅବିନ୍ୟସ୍ତ କେଶ । କାହାରି କାହାରି ଏକମାତ୍ର ପରିଧେୟ ଜଙ୍ଘିଆ !

ଯେଉଁ ସ୍ଥାନ ଅପେକ୍ଷାକୃତ ନିର୍ଜନ ଆଉ ଅନ୍ଧକାରାଚ୍ଛନ୍ନ, ସେଠାରେ ଜଣେ ହିପ୍‌ପିଣୀ ଆଉ ଦୁଇଜଣ ହିପ୍‌ପି ପ୍ରାୟ ନଗ୍ନ ଅବସ୍ଥାରେ ଶୋଇଛନ୍ତି । ସମୁଦ୍ର ବାଲିରେ ଗୋଟାଏ ଜ୍ୱଳନ୍ତ ଧୂପକାଠି ପୋତାହୋଇଛି । ପିନ୍ଧିଥିବା ପୋଷାକକୁ ସେମାନେ ଖୋଲି ବିଛଣା କରିଦେଇଛନ୍ତି ।

ନା, କୌଣସି ଲଜ୍ଜା ନାହିଁ । ସେମାନଙ୍କ ଅନାବୃତ ଦେହ କେହି ଦେଖୁଛି କି ନାହିଁ ସେଥିପ୍ରତି ଭ୍ରୂକ୍ଷେପ ମଧ୍ୟ ନାହିଁ । ସେମାନେ କେହି ପୋଷାକ ପିନ୍ଧି ଜନ୍ମ ହୋଇ ନଥିଲେ । ସେମାନେ ଈଶ୍ୱରଙ୍କ ସନ୍ତାନ, ପୋଷାକ ଈଶ୍ୱରଙ୍କ ସୃଷ୍ଟି ନୁହେଁ; ମଣିଷର ତିଆରି– ମତେ ଦେଖି ସେମାନଙ୍କ ଚାହାଣିରେ ଯେପରି ଏଇ କଥା ଲେଖିହୋଇଗଲା ।

ମୁଁ ଯେ ସେମାନଙ୍କୁ ଦେଖିବା ପାଇଁ ଏକାକୀ ପଦଚାରଣ କରୁଛି– ଏ ଧାରଣା ସେମାନଙ୍କ ମନରେ ସୃଷ୍ଟି ହେବାର ସୁଯୋଗ ନଦେଇ ମୁଁ ଅନ୍ୟ ବାଟରେ ଚାଲିଗଲି ।

ଅନେକ ସମୁଦ୍ରବେଳାରେ ସନ୍ଧ୍ୟା ପରେ ପୋଲିସ ପହରା ମୁଁ ଦେଖିଛି । କିନ୍ତୁ କାଲାନ୍‌ଗୁଟେ ବିଚ୍‌ରେ କୌଣସି ପୋଲିସ କର୍ମଚାରୀଙ୍କୁ ମୁଁ ଦେଖିଲି ନାହିଁ । ହୁଏତ ସେମାନେ ଅଛନ୍ତି, ଦେଖାଯାଉ ନାହାନ୍ତି ।

ଆରବ ସାଗର ବୁକୁରେ ଆଲୁଅ ଦେଖାଯାଉଛି ।

ଜାହାଜ ? ନା କୌଣସି ମତ୍ସ୍ୟଜୀବୀ ଧୀବରର ନୌକାର ଆଲୋକ ?

ଠିକ୍ ବୁଝିବା କଷ୍ଟ । ସମୁଦ୍ରକୁ ଚିହ୍ନିବା ସହଜ ନୁହେଁ । ବଡ଼ ରହସ୍ୟମୟ ତା'ର ରୂପ । କେତେ ବଡ଼, କେତେ ଗଭୀର, କେତେ ସୁନ୍ଦର !

: ହାଲୋ !

ପରିଚିତ କଣ୍ଠସ୍ୱର ଶୁଣି ମୁଁ ପଛକୁ ଚାହିଁଲି ।

ପଲ୍ !

ସେ ମୋର ଖୁବ୍ ନିକଟକୁ ଆସି ପଚାରିଲା– ସେ କାହିଁ ?

: କିଏ ?

: ଆପଣଙ୍କର ସେଇ ମାର୍କିନ୍ ଗାର୍ଲଫ୍ରେଣ୍ଡ !

ମୁଁ ଅକାରଣରେ ପ୍ରତିବାଦ କଲି– ସେ ମୋର ଗାର୍ଲଫ୍ରେଣ୍ଡ ନୁହେଁ । ପରିଚିତା ଜଣେ ଲେଡି ଟୁରିଷ୍ଟ ମାତ୍ର !

ପଲ୍‌ର ଝୁଲନ୍ତ ଦାଢ଼ିରେ ଚେନାଏ ହସ ଚହଲି ପଡ଼ିଲା ।

ସେ କହିଲା– ମୁଁ ଜାଣେ । ସି ଇଜ୍ ହାର୍ଡ ନଟ୍ ଟୁ କ୍ରାକ୍ ଏବଂ ମୁଁ ଆପଣଙ୍କୁ ଦୃଢ଼ତାର ସହିତ କହିପାରେ ସେ ଜଣେ ଯୌନ-ଜଡ଼ ନାରୀ... ଫ୍ରିଜିଡ୍ !

ପଲ୍‌ର ମୁହଁର ଚେହେରା ଦେଖି ତାକୁ ଜଣେ ଅଳ୍ପବୟସ୍କ ଅନଭିଜ୍ଞ କିଶୋର ଭଳି ମନେହେଉଥିଲେ ସୁଦ୍ଧା, ତା'ର କଥା ଶୁଣି ବୋଧହେଲା ଲୋକଟା ଗୋଟାଏ ସଇତାନ୍ । ସେ ଆମେରିକାନ୍ ହିପ୍‌ପିଣୀ ଯୌନ-ଜଡ଼ ନାରୀ କି ନୁହେଁ; ସେଥିରେ ମୋର ଯାଏଆସେ କେତେ ?

ମୋର ନୀରବତାକୁ ଦୁର୍ବଳତା ବୋଲି ମନେକରି ସେ ଫିସ୍ ଫିସ୍ କରି ମୋ କାନ ପାଖରେ କହିଲା– ଆପଣ ପଚାଶ ଟଙ୍କା ଖର୍ଚ୍ଚ କରିପାରିବେ ? ୟୁ କ୍ୟାନ୍ ଗେଟ୍ ମାଇଁ ଗାର୍ଲ ଫ୍ରେଣ୍ଡ... ଆଇ ମିନ୍ ରାଧା ...

ପଚାଶ ଟଙ୍କା ଦେଲେ ମୁଁ ପଲ୍‌ର ବାନ୍ଧବୀ ସେଇ ଫରାସୀ ଲଳନାକୁ ଭୋଗ କରିପାରେ, ଏକଥା ଶୁଣି ମୋ କାନମୁଣ୍ଡା ଝାଇଁ ଝାଇଁ ହୋଇଗଲା ।

ମୁଁ ତାକୁ ମୃଦୁ ଧମକ ଦେଇ କହିଲି– ନିଶା ବୋଧହୁଏ ବେଶୀ ହୋଇଯାଇଛି । ଏଲ୍.ଏସ୍.ଡି ନା ହେରୋଇନ୍ ?

ପଲ୍‌ର ମୁହଁ ସେ ଅସ୍ପଷ୍ଟ ଆଲୋକରେ ବଡ଼ କରୁଣ ଦେଖାଗଲା ।

ସେ କାତର କଣ୍ଠରେ କହିଲା– ବିଲିଭ୍ ମି, ଆଇ ହାଭ୍ ନଥିଂ । ମୁଁ ରାଧାର ଦାମ୍ କମ୍ କରିଦେବାକୁ ପ୍ରସ୍ତୁତ । କ୍ୟାନ୍ ୟୁ ସ୍ପେଆର୍ ଓନ୍‌ଲି ଟ୍ୱେଣ୍ଟି ? ତା'ର ଯୌବନ ଫୁଲ ଭଳି ସତେଜ... ନଥିଂ ଲାଇକ୍ ହାର୍ ! ନୋ ଭିଡି...

ପଲ୍ ଏଥର ମୋର ଖୁବ୍ ନିକଟବର୍ତ୍ତୀ ହୋଇଆସିଲା । ଲଜ୍ଜା କିମ୍ବା ଘୃଣାରେ ନୁହେଁ; ଭୟରେ ମୁଁ ପଛକୁ ଘୁଞ୍ଚିଆସିଲି ।

ଖୁବ୍ ଅଳ୍ପ ଦୂରରେ ଏକ ସିଲ୍‌ହଟ୍ ଛବି ଭଳି ମୋ ଆଡ଼କୁ ପିଠି କରି ଯିଏ ଠିଆହୋଇଛି, ସେ ଯେ ପଲ୍‌ର ବାନ୍ଧବୀ ସେଇ ଫରାସୀ-ଲଳନା, ସେକଥା ବୁଝିବା ପାଇଁ ମୋର ବିଳମ୍ବ ହୋଇ ନଥିଲା ।

ମୁଁ ତାକୁ ଧମକଦେଇ କହିଲି– ସେ ତମର ପ୍ରିୟ–ବାନ୍ଧବୀ । ମୁଁ ଜୋର୍ ଦେଇ କହି ପାରେ ସେ ତୁମକୁ ପ୍ରାଣ ଦେଇ ଭଲପାଏ । ପ୍ରଣୟିନୀର ଇଜ୍ଜତ ରକ୍ଷା କରିବା ତମର କର୍ତ୍ତବ୍ୟ । ତା'ର କଞ୍ଚାମାଂସକୁ ବିକ୍ରି କରି ତମେ ନିଶା ବଟିକା କିଣିବାକୁ ଚାହୁଁଛ, ଲଜ୍ଜା ଲାଗୁନି ?

ମୃଦୁ ଧକ୍‌କା ଖାଇଲା ଭଳି ଟିକିଏ ପଛକୁ ଘୁଞ୍ଚିଯାଇ ନିଜକୁ ସମ୍ଭାଳିନେଲା ପଲ୍ ।

ତା'ପରେ ଈଷତ୍ ହତାଶ କଣ୍ଠରେ କହିଲା– ଆପଣ ଭାରତୀୟମାନେ ସବୁବେଳେ ସେକ୍‌ସକୁ ଇଜ୍ଜତ ସହିତ ଯୋଡ଼ିଦେଇ ଚିନ୍ତା-ବିଭ୍ରାଟ ସୃଷ୍ଟିକରନ୍ତି । ମୋ ଚିନ୍ତା କିନ୍ତୁ ଖୁବ୍ ସ୍ୱଚ୍ଛ; ମନରେ କୌଣସି ଆବିଳତା ନାହିଁ । ସେକ୍‌ସ ଉପଭୋଗ କରିବାର ବସ୍ତୁ, ପୂଜା କରିବାର

ସାମଗ୍ରୀ ନୁହେଁ । ଦୟାକରି ମତେ କୋଡ଼ିଏ ଟଙ୍କା ଦିଅନ୍ତୁ... ଭାରି ଜରୁରୀ ଦରକାର... ନୋ ପଟ୍, ମେରିଜେନ୍, ଗ୍ରାସ୍, ଏସିଡ୍ ଅର୍ ସ୍ପିଡ ଫର୍ ଟୁଡେ ଇଭିନ୍ ! ବି କାଇଣ୍ଡ... ପ୍ଲିଜ୍....

ଗୋଟାଏ ଦଶଟଙ୍କିଆ ନୋଟ୍ ପଲ୍ ଉପରକୁ ଫିଙ୍ଗିଦେଇ ମୁଁ ମୋର ଗୋଲାକାର ପୃଥିବୀ ପରିକ୍ରମା ଶେଷ କରି ଯେଉଁଠୁ ଯାତ୍ରାରମ୍ଭ କରିଥିଲି ପୁଣି ସେହି ସ୍ଥାନକୁ ଫେରିଆସିଲି ।

ହିପ୍‌ପିଣୀ ମୋର ପ୍ରତ୍ୟାବର୍ତ୍ତନ ଦେଖି ମୃଦୁ ହସିଲା ।

ମୁଁ କୈଫିୟତ୍ ଦେବା ଭଳି କହିଲି– ଖୁବ୍ ଡେରି ହୋଇଗଲା । ଟାକ୍‌ସିବାଲା ହୁଏତ ବିରକ୍ତିରେ ପାଞ୍ଜିମ୍ ଫେରିଯିବଣି । ଚାଲ୍... ଶୀ...

ସେ ତା'ର କ୍ଳାନ୍ତ, ଅବସନ୍ନ ଦେହକୁ ଉଠାଇବାକୁ ଚେଷ୍ଟାକଲା; କିନ୍ତୁ ପାରିଲା ନାହିଁ । ମୁଁ ହାତ ଧରି ତାକୁ ଉଠାଇଆଣିଲି ।

ଆସିବା ବାଟରେ ମୁଁ କହିଲି– ଜାଣ, ପୁଣି ଥରେ ପଲ୍ ସହିତ ଦେଖାହେଲା ।

ହିପ୍‌ପିଣୀ ମୋ ଆଡ଼କୁ ତୀର୍ଯ୍ୟକ ଦୃଷ୍ଟିରେ ଚାହିଁ ମନ୍ତବ୍ୟ କଲା– ପଲ୍ ସହିତ ନା ତା'ର ଗାର୍ଲ ଫ୍ରେଣ୍ଡ ସହିତ ?

ତା'ର କଥାରେ ଈର୍ଷାର ବିଷ; ଚାହାଣିରେ ଆହତ ଅଭିମାନ ।

ମୁଁ ତାକୁ ଚମକାଇ ଦେବାକୁ କହିଲି– ଜାଣ, ପଲ୍ ତମ ସମ୍ପର୍କରେ ବାଜେ କଥା କହୁଥିଲା ।

ସେ ଉତ୍କଣ୍ଠିତ ଭାବରେ ପଚାରିଲା– କ'ଣ ? କ'ଣ କହୁଥିଲା ?

ମୁଁ ଗମ୍ଭୀର ହୋଇ ଉତ୍ତରଦେଲି– ତମେ ଜଣେ ଆମେରିକାନ୍ ଗୁପ୍ତଚର; ସି.ଆଇ.ଏ. ଏଜେଣ୍ଟ ।

ମୋ କଥା ଶୁଣି ଫିକ୍ କରି ହସିଉଠିଲା ହିପ୍‌ପିଣୀ । ତା'ର ସେ ହସର ସ୍ରୋତରେ ମୋ ମୁହଁର ଇଚ୍ଛାକୃତ ଗାମ୍ଭୀର୍ଯ୍ୟ ସମ୍ପୂର୍ଣ୍ଣ ଧୋଇହୋଇଗଲା ।





କାଲାନ୍‌ଗୁଟେ ସମୁଦ୍ର ବେଳାର ଖୁବ୍ ଅଳ୍ପ ଦୂରରେ ଅଞ୍ଜନା ।

ଅଞ୍ଜନା ସମୁଦ୍ରକୂଳିଆ ଗ୍ରାମର ନାମ ।

ହିପ୍‌ପିମାନଙ୍କ ସମାବେଶ ଫଳରେ ଏହି ଗ୍ରାମ୍ୟବିଟ୍ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଛି । ସାତ–ଆଠ ବର୍ଷ ତଳେ ହିପ୍‌ପିମାନେ ଯେତେବେଳେ ଗୋଆର ବେଳାଭୂମିରେ ଠୁଳ ହେଲେ, ସେତେବେଳେ ସେମାନଙ୍କୁ ପରମ ଆଦରରେ ସ୍ୱାଗତ କରିଥିଲା ଏଇ ଅଞ୍ଜନା । କାଲାନ୍‌ଗୁଟେରେ ଏତେ ହୋଟେଲ, ମୋଟେଲ୍, ଟୁରିଷ୍ଟ କଟେଜ୍ ନଥିଲା । ଯେଉଁ ଗୋଟିଏ ଦୁଇଟି ହୋଟେଲ ଅବା ଥିଲା, ସେଥିରେ ରହିବା ଖର୍ଚ୍ଚ ଥିଲା ହିପ୍‌ପିମାନଙ୍କ ଆର୍ଥିକ ସମ୍ବଳର ଊର୍ଦ୍ଧ୍ୱରେ ।

ଦିନେ ଅଞ୍ଜନା ଗ୍ରାମର ସରଳ, ମତ୍ସଜୀବୀ ଅଧିବାସୀମାନେ ଦେଖିଲେ ଗୋରା ଗୋରା ଦାଢ଼ି କଲିବାଲା ସାହେବ, ମେମ୍‌ମାନେ ମୁଣ୍ଡ ଗୁଞ୍ଜିବାକୁ ସେମାନଙ୍କର ଆଶ୍ରୟ ପ୍ରାର୍ଥୀ ! କେହି ଆମେରିକାନ୍, କେହି ଫରାସୀ, କେହି ଜର୍ମାନ୍ ଅଥବା ଇଂଲଣ୍ଡର ଅଧିବାସୀ ! କିନ୍ତୁ ସେମାନଙ୍କର ବେଶପୋଷାକ ଏକାଭଳି । ସାହେବମାନଙ୍କ ମୁହଁ ଭର୍ତ୍ତି ଦାଢ଼ି, ଲମ୍ବା କଲି, ଛୋଟ ହାପ୍ ପ୍ୟାଣ୍ଟ ଆଉ ରଙ୍ଗିନ କୁର୍ତ୍ତା । ହାତରେ ଚିଲମ; ନ ହେଲେ ଗିଟାର୍ । ପଛପଟେ ପିଠିରେ ଲଦା ହୋଇଥିବା ବ୍ୟାଗ୍‌ରେ ଜିନିଷ ଠେସାଠେସି । ମେମ୍‌ମାନେ ଜିନ୍, ଟପ୍, କେହି ଅବା ମିନିସ୍କାର୍ଟ ପିନ୍ଧି, କାନ୍ଧରେ ଝୁଲାମୁଣି ଧରି, ମୁହଁ ସାରା ରଙ୍ଗିନ୍ ଚିତ୍ର ଆଙ୍କି, ମୁଣ୍ଡରେ ରୁମାଲ୍ ବାନ୍ଧି ଆସିଛନ୍ତି ।

ଅଞ୍ଜନା ଗ୍ରାମର ଛୁଆ–ପିଲା, ବୁଢ଼ା–ବୁଢ଼ୀ ଅବାକ୍ ଆଖିରେ ସେମାନଙ୍କୁ ଚାହିଁ ରହିଥିଲେ ସେଦିନ । ପ୍ରଶ୍ନ କରିଥିଲେ– କ୍ୟା ଜରୁରତ୍ ସାହେବ !

: ରହିବା ପାଇଁ ଘର, a room under the sun. ଠହରନ୍‌କେ ଲିୟେ ମକାନ୍ ! –ସେମାନେ ସମ୍ମିଳିତ ଭାବରେ ଉତ୍ତର ଦେଇଥିଲେ ।

: କିନ୍ତୁ ଆମ ଘର ତ ମାଟିଘର । ଛପର ଘର । ତମେ ସବୁ ଗୋରା ସାହେବ । ସେଠାରେ ରହିବ କେମିତି ? —ସମବେତ ଗ୍ରାମବାସୀମାନେ ବିସ୍ମୟ-ବ୍ୟାକୁଳ କଣ୍ଠରେ ପ୍ରଶ୍ନ କରିଥିଲେ ।

ସେମାନଙ୍କ ଛପର, ମାଟିଘର ଦେଖି ହିପ୍‌ପିମାନେ କିନ୍ତୁ ଆନନ୍ଦରେ ନାଚିଉଠିଥିଲେ । ସେମାନେ ତ ଏଇଭଳି ଘର ଚାହିଁଥିଲେ ! A simple home !

ବାସ୍, ଅତିଥିବତ୍ସଳ ଅଞ୍ଜନା ଗ୍ରାମବାସୀମାନେ ହିପ୍‌ପିମାନଙ୍କ ପାଇଁ କେତୋଟି ଘର ଖାଲି କରିଦେଇଥିଲେ । ଖୋଲା ପଡ଼ିଆରେ ମଧ ହିପ୍‌ପିମାନେ ନିଜ ଚେଷ୍ଟାରେ ଗଢ଼ିତୋଳିଥିଲେ କେତୋଟି ଝାଟିମାଟି ଘର । ତଥାପି ଯେଉଁମାନଙ୍କୁ ସ୍ଥାନାଭାବ ହେଲା ସେମାନେ ମାସେ ଦୁଇ ମାସ ପାଇଁ ତାଟି ଝାଟିରେ ଅସ୍ଥାୟୀ ଘର ତୋଳିନେଲେ । ଅଞ୍ଜନା ହୋଇଗଲା ୟୁରୋପ ଆମେରିକାର ସମାଜ-ବିଦ୍ରୋହୀ କିଶୋର-କିଶୋରୀ, ତରୁଣ-ତରୁଣୀମାନଙ୍କ ଗ୍ରାମ୍ୟ ଉପନିବେଶ !

ବର୍ଷାଦିନ ଛାଡ଼ିଦେଲେ ବର୍ଷର ଅନ୍ୟ ସବୁଦିନେ ହିପ୍‌ପିମାନଙ୍କ ଗହଳ ଚହଳ ଲାଗି ରହୁଥିଲା । ତେଣୁ ସମୁଦ୍ରକୁ ଜାଲନେଇ ମାଛ ଧରିବାକୁ ଯାଉଥିବା ଧୀବର, କ୍ଷେତକୁ ଯାଉଥିବା କୃଷକ ନିଜର କୌଳିକ ବ୍ୟବସାୟ ଛାଡ଼ି ଦେଇ ଛୋଟ ଛୋଟ ଦୋକାନ ଖୋଲି ବସିଲେ । ଚୋରା ନିଶା ବଟିକା, ଫେନି ମଦର କାରବାର ମଧ ଗଢ଼ିଉଠିଲା । ଅଞ୍ଜନାର ଗ୍ରାମୀଣ ସଂସ୍କୃତିର ଅନୁପ୍ରବେଶ କଲା ସହରି ସଭ୍ୟତାର କୃତ୍ରିମତା, ଜଟିଳତା ।

ଆଉ ଦିନେ ଅଞ୍ଜନାର ଗ୍ରାମବାସୀମାନେ ଦେଖିଲେ ସାହେବ, ମେମ୍‌ମାନେ ନିଶାରେ ମାତାଲ ହୋଇ ପୋଷାକ ପରିଚ୍ଛଦ ଦୂରକୁ ଫିଙ୍ଗିଦେଇ ଉଲଗ୍ନ ହୋଇ ବୁଲୁଛନ୍ତି । ଗ୍ରାମର ଝିଅ ବୋହୂମାନେ ପଦାକୁ ବାହାରି ପାରୁନାହାନ୍ତି ଲଜ୍ଜାରେ । ଗ୍ରାମର କେତେକ ଯୁବକ କୌଣସି କୌଣସି ଦିଗମ୍ବରୀ ମେମ୍‌ସାହେବଙ୍କ ସହିତ ଘନିଷ୍ଠ ହେବାକୁ ଚେଷ୍ଟା କରିବା ଫଳରେ ହିପ୍‌ପି ସାହେବମାନଙ୍କ ସହିତ ରକ୍ତାକ୍ତ ସଂଘର୍ଷ ଲାଗିଯାଇଛି ।

ସାହେବ ମେମ୍‌ମାନଙ୍କ ଏ ପୋଷାକ-ଖୋଲା ରୂପ ଦେଖି ଅଞ୍ଜନା ଗ୍ରାମର ରକ୍ଷଣଶୀଳ ବିବେକ ହଠାତ୍ ଜାଗତିଆର୍ ହୋଇଉଠିଲା ।

ଲଙ୍ଗୁଳି ଗୋରା ବାବାମାନଙ୍କୁ ତଡ଼ିବା ପାଇଁ ଶୁଣାଗଲା ରେରେକାର ରବ !

ଅଞ୍ଜନା ଗ୍ରାମର ପ୍ରବେଶ ପଥରେ ଲାଗିଲା ଏକ ନୂଆ ସାଇନ୍‌ବୋର୍ଡ, ଯେଉଁଥିରେ ଖୁବ ବଡ଼ ବଡ଼ ଅକ୍ଷରରେ ଲେଖାଥିଲା 'NUDISM PROHIBITED' ନଗ୍ନତା ନିଷେଧ !

ହିପ୍‌ପିଣୀ ସାଇନ୍‌ବୋର୍ଡ ପଢ଼ି ମୋ ଆଡ଼କୁ ଚାହିଁ ହସିଲା ।

ଚାପା କଣ୍ଠରେ କହିଲା– ଆମେ ସମସ୍ତେ ନିଜ ନିଜ ପୋଷାକ ତଳେ ଉଲଗ୍ନ । କିନ୍ତୁ ଏହି ନଗ୍ନତାକୁ ଆମର ସବୁଠାରୁ ବଳି ଭୟ । ନା ?

ମୁଁ ଉତ୍ତର ଦେଲି– ଜଣକର ନଗ୍ନ ଦେହ ଦେଖିଲେ ଆଉ ଜଣକ ରକ୍ତକୋଷରେ ଯଦି ବିସ୍ଫୋରଣ ସୃଷ୍ଟି ହୁଏ; ତାହାହେଲେ ନଗ୍ନତା ନିଃସନ୍ଦେହରେ ବିପଦଜନକ । ନୁହେଁ ?

: ବ୍ୟାପାରଟା ଦୈହିକ ନୁହେଁ; ମାନସିକ । ଯେଉଁମାନଙ୍କ ମନ ଦୁର୍ବଳ, ପୋଷାକ ପିନ୍ଧା ଦେହକୁ ମଧ୍ୟ ସେମାନେ ଅନ୍ତର୍ଦୃଷ୍ଟିରେ ଲକ୍ଷ୍ୟ କରି ନିଜ ରକ୍ତକୋଷରେ ବିସ୍ଫୋରଣ ସୃଷ୍ଟି କରି ପାରନ୍ତି । ନା ? – ସେ ମୋ ଆଡ଼କୁ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁରହିଲା ।

ତା’ ନିଜ ପ୍ରଶ୍ନର ଉତ୍ତର ତାକୁ ଜଣାଥିଲା । ମୁଁ ତେଣୁ ତାକୁ ଆଉ ସେ ପ୍ରଶ୍ନର ଉତ୍ତର ନଦେଇ ଆଉ ଏକ ଅଲଗା ପ୍ରଶ୍ନ ପଚାରି ବସିଲି ।

: ଜଣେ ଯୁବକର ନଗ୍ନ ଦେହ ଦେଖିଲେ ତମ ରକ୍ତକୋଷରେ ଅଗ୍ନିକାଣ୍ଡ ଘଟେ ନାହିଁ ?

: ଦିନେ ହୁଏତ ଘଟୁଥିଲା । ଆଜିକାଲି ପୁରୁଷର ନଗ୍ନ [illegible] ମୋ ମନରେ କୌଣସି କୌତୂହଳ ମଧ୍ୟ ସୃଷ୍ଟି କରେ ନାହିଁ । ମୁଁ ନିଜେ ମଧ୍ୟ ଅନ୍ୟ କୌଣସି ପୁରୁଷ ସାମ୍ନାରେ ପୋଷାକ ଖୋଲିଲାବେଳେ କାନ ମୁଣ୍ଡା ଆଗ୍ନେୟ ଉତ୍ତାପରେ ଉତ୍ତେଜିତ ହୋଇଉଠୁଥିବା ଅନୁଭବ କରେ ନାହିଁ । – ସେ ନିଃସଙ୍କୋଚରେ ନିଜର ଯୌନ-ଜଡ଼ତା କଥା ସ୍ୱୀକାର କରିଗଲା ।

ମୁଁ ମୃଦୁ ହସି ମନ୍ତବ୍ୟ କଲି– ପଲ୍ ଠିକ୍ କହୁଥିଲା, ତମେ ଜଣେ ଯୌନଜଡ଼ ନାରୀ... ଫ୍ରିଜିଡ୍ ଉଇମାନ୍ !

: ପଲ୍ ଏକଥା ଆପଣଙ୍କୁ କହୁଥିଲା ? ମୁଁ ଜାଣେ ଏକଥା ସେ ଅନ୍ୟମାନଙ୍କୁ ମଧ୍ୟ କହିଛି, କିନ୍ତୁ ସେ ନିଜେ କ’ଣ ? ସେ ଗିଟାରରେ ସଂଗୀତ ସ୍ୱର ମୂର୍ଚ୍ଛନା ସୃଷ୍ଟି କରିପାରେ; କିନ୍ତୁ ନାରୀ ଦେହ ଯେ ଅନେକ ଲଳିତ ମଧୁର ସଙ୍ଗୀତର ମୂଳ ଉତ୍ସ; ଏ ସାଧାରଣ ଜ୍ଞାନ ମଧ୍ୟ ତା’ର ନାହିଁ । ନିଶା ବଟିକା ଆଉ ନିଶା-ଇଂଜେକସନ୍ ଆମ ସମସ୍ତଙ୍କ ରକ୍ତ କୋଷରେ ଜଡ଼ତା ଆଣି ଦେଇଛି । ପୋଷାକ ତଳେ ଗୋପନ କରି ରଖିବାକୁ ଆଉ କୌଣସି ଅତିରିକ୍ତ ଉତ୍ତେଜନା ଅବଶିଷ୍ଟ ନାହିଁ । ଆମେ ସମସ୍ତେ ମୋକ୍ଷ ପାଇଯାଇଛୁ... ଆଟେନ୍‌ଡ୍ ସାଲ୍‌ଭେସାନ୍... ଆମେ ସମସ୍ତେ ଫେରିପାଇଛୁ ଆମର ଅପହୃତ ଶୈଶବ... ଆମର ଯୌନାଙ୍ଗ ଅଛି; ଯୌନ ଉତ୍ତେଜନା ନାହିଁ । ଶିଶୁ ପୋଷାକ ନପିନ୍ଧିଲେ କେହି ପ୍ରତିବାଦ କରନ୍ତି ନାହିଁ; ଆମେ ଉଲଗ୍ନ ହେଲେ ବି ବିଚ୍‌ରେ ନଗ୍ନତା ବିରୁଦ୍ଧରେ ସାଇନ୍‌ବୋର୍ଡ ଲଗାଯାଏ କାହିଁକି ? – ସେ ନିଜସ୍ୱ ଭଙ୍ଗୀରେ 'Nudism Prohibited' ସାଇନବୋର୍ଡର ପ୍ରତିବାଦ କଲା ।

ମୁଁ କିଛି ମନ୍ତବ୍ୟ କଲିନାହିଁ । କେତେ ଅବା ହେବ ଏଇ ବିଦେଶିନୀର ବୟସ ? ତା’ ନିଜ ଅନୁମାନ ଅନୁସାରେ ମାତ୍ର ତେତିଶ ବର୍ଷ । ଭାରତୀୟ ମାପକାଠିରେ ମଧ୍ୟ-ଯୌବନା ହେଲେ ମଧ୍ୟ ୟୁରୋପୀୟାନ୍ ଷ୍ଟାଣ୍ଡାର୍ଡରେ ସେ ତରୁଣୀ ମାତ୍ର ! ଅଥଚ ସେ ଏଥି ମଧ୍ୟରେ ତା’ର ଯୌନ ଆବେଗ ହରାଇ ସନ୍ନ୍ୟାସିନୀ !

ଆମେ ଅଞ୍ଜନା ଗ୍ରାମରେ ପହଞ୍ଚିବା ମାତ୍ରେ ଜଣେ ଗୋଆନିଜ୍ ଆସି ପଚାରିଲା– ସାହେବ ! ମକାନ୍ ଚାହିୟେ ? ଆଚ୍ଛା ମକାନ୍... ଦୋ କମରାବାଲା ହୈ... ପାଞ୍ଚ ରୁପେୟା ଏକ ଦିନ୍‌କେ ଲିୟେ....

ମୋର ମନେହେଲା କୌଣସି ହିଲ୍ ଷ୍ଟେସନ୍‌ରେ ପହଞ୍ଚିଲେ ହୋଟେଲର ଏଜେଣ୍ଟମାନେ ଯେପରି ଷ୍ଟେସନ୍ ଓ ବସ୍‌ଷ୍ଟାଣ୍ଡରୁ ଯାତ୍ରୀମାନଙ୍କୁ ନିଜ ହୋଟେଲକୁ ନେବାପାଇଁ ପ୍ରବର୍ତ୍ତନ୍ତି; ଅଞ୍ଜନା ଗ୍ରାମର ଘରବାଲା ମଧ୍ୟ ତା' ଘରଭଡ଼ା ଲଗାଇବାପାଇଁ ଠିକ୍ ସେଇ ଫନ୍ଦି ଧରିଛି । ଆମେ ଦୁହେଁ ଅଞ୍ଜନା ଗ୍ରାମରେ ରହିବା ପାଇଁ ଆସିନାହୁଁ; ହିପ୍‌ପିମାନଙ୍କ ସାମୟିକ ଉପନିବେଶ ଦେଖିବାକୁ ଆସିଛୁ– ଏକଥା ଜାଣିଲାପରେ ତା ମୁହଁ ଶୁଖିଗଲା ।

ମୁଁ ତା'ର ଶୁଖିଲା ମୁହଁ ଦେଖି ପଚାରିଲି– ଘର ଭଡ଼ା ଦେଇ କଅଣ ତମେ ନିଜ ଗୁଜୁରାଣ ମେଣ୍ଟାଅ ? ଅନ୍ୟ କିଛି ବ୍ୟବସାୟ ନାହିଁ ?

ସେ ଉତ୍ତର ଦେଲା– ସମୁଦ୍ରରୁ ମାଛ ଧରି ଆମେ କାଳକାଳକ ଚଳିଆସୁଥିଲୁ । ହିପ୍‌ପିମାନେ ଆସିବା ପରେ ମାଛ ଧରା ଛାଡ଼ିଦେଇଛି । ହିପ୍‌ପି କଲୋନୀରେ ଗୋଟିଏ ଦୋକାନ ଦେଇଛି । ଦୁଇଖଣ୍ଡ ଘର ତିଆରି କରିଛି ସାହେବ, ମେମ୍‌ମାନଙ୍କୁ ଭଡ଼ା ଦେବାପାଇଁ ।

କାଲାନ୍‌ଗୁଟେ ବିଚ୍‌ରେ ହିପ୍‌ପିମାନଙ୍କ ଆବିର୍ଭାବ ଫଳରେ କାଲାନ୍‌ଗୁଟେ ଅଧିବାସୀମାନଙ୍କ ଜୀବନଯାପନ ପ୍ରଣାଳୀ ମଧ୍ୟ ବଦଳିଯାଇଛି । ମାଛ ଧରିବା ପାଇଁ ସମୁଦ୍ରରେ ଜାଲ ପକାଇବା ଛାଡ଼ି ଦେଇ ସେମାନେ ସାହେବ ମେମ୍‌ମାନଙ୍କୁ ଧରିବା ପାଇଁ ଅଞ୍ଜନା ଗ୍ରାମରେ ଜାଲ ପାତି ବସିଛନ୍ତି ।

: ବର୍ତ୍ତମାନ କଅଣ ସାହେବ ମେମ୍‌ମାନେ ବେଶୀ ସଂଖ୍ୟାରେ ଆସୁନାହାନ୍ତି ରହିବା ପାଇଁ ?

: ଏଇଟା ତ ସେପ୍ଟେମ୍ବର ମାସ । ବର୍ଷାର ଓଦା ଦାଗ ମାଟିରୁ ଛାଡ଼ିନାହିଁ । ଆକାଶ ଆହୁରି ମେଘମୁକ୍ତ ହୋଇନାହିଁ । ଆମର ଏଠାରେ ସିଜିନ୍ ହେଲା ନଭେମ୍ବରରୁ ମାର୍ଚ୍ଚ ମାସ । ଝାଙ୍କ ଝାଙ୍କ ଚଢ଼େଇ ଯେମିତି ଶରତ ଋତୁରେ ସମୁଦ୍ର ଉପରେ ଚକ୍‌କର କାଟନ୍ତି, ଦଳ ଦଳ ସାହେବ, ମେମ୍ ସେମିତି ନଭେମ୍ବର ମାସ ପରେ ଛୁଟିଆସନ୍ତି କାଲାନ୍‌ଗୁଟେ । ଆମକୁ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ହୁଏ । କିଛି କିଛି ସାହେବ ମେମ୍ ଆସି ଅଛନ୍ତି ବର୍ତ୍ତମାନ, ଆର ମାସ ସୁଦ୍ଧା ଆହୁରି ବେଶୀ ଆସିବେ । କିନ୍ତୁ...

ଦୀର୍ଘ ଗୋଆନିଜ୍ ଲୋକଟି ଟିକିଏ କଥା ମଝିରେ ଅଟକିଯାଇ ଚାରିଆଡ଼କୁ ଚାହିଁଲା । ତା'ପରେ ଫୁସ୍ ଫୁସ୍ କରି କହିଲା– ଆପଣ ତ ଆମର ଦେଶୀ ସାହେବ ! କଥାଟା କହିଲେ କିଛି କ୍ଷତିନାହିଁ । ଏଇ ଯେ ଗୋରା ସାହେବ ମେମ୍‌ମାନଙ୍କୁ ଲଙ୍ଗଳା ହୋଇ ସମୁଦ୍ର ବାଲିରେ ବସି ଖରା ପୁହାଇବାକୁ ଆଉ ହାୱା ଖାଇବାକୁ ମନା କରିଦିଆଗଲା, ପୋଲିସ୍ ଜୁଲୁମ୍ କଲା, ସେଥିରେ ସାହେବ ମେମ୍‌ମାନଙ୍କ ଆସିବା ବହୁତ କମିଯାଇଛି । ସେମାନେ ଟିକିଏ ଫୁର୍ତ୍ତି କରିବାକୁ ଆସିବେ । ସେଥିରେ ଯଦି ପୋଲିସ ଲାଠି ଧରି ଗୋଡ଼ାଏ, ଏଠାକୁ କିଏ କାହିଁକି ଆସିବାକୁ ଚାହିଁବ ? ପୋଷାକ ପିନ୍ଧି ଫୁର୍ତ୍ତି କରିବାକୁ ଦେଶରେ କଅଣ ଆଉ ସମୁଦ୍ର ବାଲି ନାହିଁ !

ନଗ୍ନତାକୁ କେନ୍ଦ୍ର କରି ହିପ୍‌ପିମାନଙ୍କ ଉପରେ ପୋଲିସ ଜୁଲୁମ୍‌କୁ କେହି କେହି ସ୍ଥାନୀୟ ଅଧିବାସୀ ଯେ ପସନ୍ଦ କରୁନାହାନ୍ତି; ସେକଥା ତା' ବକ୍ତବ୍ୟରୁ ଜଣାପଡ଼ିଗଲା ।

ତଥାପି ସନ୍ଦେହ ମୋଚନ କରିବାକୁ ମୁଁ ତାକୁ ପଚାରିଲି– ଗୋରା ସାହେବ, ମେମ୍‌ମାନେ ଗୋଟିସୁଦ୍ଧା ଲଙ୍ଗଳା ହୋଇ ବୁଲାଚଲା କଲେ ତମର କିଛି ଆପତ୍ତି ନାହିଁ ?

ଲୋକଟି ମୋର ଏ ସିଧାସଳଖ ପ୍ରଶ୍ନର ସାମ୍ନାରେ ପଡ଼ିଯାଇ ଟିକିଏ ଦବିଗଲା । ଭୟ ପାଇଗଲା । କିନ୍ତୁ କିଛି ସମୟ ପରେ ସାହସ ସଞ୍ଚୟ କରି କହିଲା– ମୁହଁରେ ଆପତ୍ତି କଲେ ବି ମନ ଭିତରେ ଆପତ୍ତି କରିବାର କଥଣ ଅଛି ? ସତ କହିବାକୁ ଗଲେ ଅଞ୍ଜନା ବିଚ୍‌ରେ ଯେ ଏତେ ସୁନାମ ହୋଉଛି, ତାହା ଏଇ ଲଙ୍ଗୁଳି ସାହେବ ମେମ୍‌ମାନଙ୍କ ପାଇଁ । ଗୋଆରେ ତ ଅନେକ ବିଚ୍ ଅଛି ! କୋଲାବା, ଭାଗାତ୍‌ର, ବାଗ୍, ମୀରମାର୍ ବିଚ୍– ଏମିତି କେତେ ସମୁଦ୍ରତଟ ! ଅନ୍ୟ ଦେଶର ସମୁଦ୍ର କୂଳରେ ମଧ୍ୟ ବିଚ୍‌ର ଅଭାବ ନାହିଁ । ତଥାପି କାହିଁକି ଟୁରିଷ୍ଟମାନେ ଗୋଆ ଆସିଲେ ଅଞ୍ଜନା ବିଚ୍‌କୁ ଛୁଟିଆସନ୍ତି ? କେବଳ ଏହାର ରାଶି ରାଶି ଶ୍ୱେତ ଶୁଭ୍ର ବାଲି, ଧାଡ଼ି ଧାଡ଼ି ନଡ଼ିଆଗଛ, ମଲା କଙ୍କଡ଼ା ଆଉ ଶାମୁକା ଦେଖିବା ପାଇଁ ? ନା, ସେମାନଙ୍କ ଦର୍ଶନୀୟ ବସ୍ତୁର ତାଲିକାର ସବା ଉପରେ ଥାଏ ସାହେବ ମେମ୍‌ମାନଙ୍କ ଅନାବୃତ ଦୈହିକ ସୌନ୍ଦର୍ଯ୍ୟ । ଆକାଶ, ସମୁଦ୍ର, ବେଳାଭୂମି ଭଳି ନଗ୍ନ ମଣିଷର ଦେହ ମଧ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟର ଅପରୂପ ପ୍ରକାଶ– ଏକଥା ମାନିନେଲେ କ୍ଷତି କ'ଣ ?

ଲୋକଟିର କଥା ଶୁଣି ତା' ପ୍ରତି ମୋର ମମତା ଆସିଗଲା ।

ମୁଁ କହିଲି– ଠିକ୍ ଅଛି, ଆମେ ଆଜି ତମ କଟେଜ୍‌ରେ ରହିବୁ । ରାତିରେ ଫେରିଯିବୁ ପାଞ୍ଜିମ୍ । କିନ୍ତୁ ତମେ ଗୋଟିଏ ଦିନର ପୂରା ଭଡ଼ା ପାଇବ– ପାଞ୍ଚଟଙ୍କା ।

ଲୋକଟିର ମୁହଁ ମୋ କଥା ଶୁଣି ନୂଆ ଦର୍ପଣର କାଚ ଭଳି ଚିକ୍ ଚିକ୍ କରିଉଠିଲା ।

କାଜୁବାଦାମ ଗଛର ଡାଳରେ ତିଆରି, ନଡ଼ିଆ ପତ୍ରରେ ଛପର ହୋଇଥିବା ଦୁଇବଖୁରିଆ ପର୍ଣ୍ଣକୁଟୀର ଦେଖି ମନରେ ଋଷି ଆଶ୍ରମର ଭ୍ରମ ସୃଷ୍ଟିହେଲା । ଭିତରେ ପଡ଼ିଛି ନଡ଼ିଆକତାରେ ତିଆରି ଗାଲିଚା । ଝାଟିମାଟି ଘର ଆଗରେ ଗୋଟିଏ ଛୋଟ ତୁଳସୀ ଚଉରା ।

ଲୋକଟି କହିଲା– ଏ ଚଉରା ମୁଁ ତିଆରି କରିନି– ଆଗରୁ ଯେଉଁ ସାହେବ, ମେମ୍ ରହୁଥିଲେ, ସେଇମାନେ ନିଜ ହାତରେ ତିଆରି କରିଛନ୍ତି । ମେମ୍‌ସାହେବ ନିଜେ ରୁଦ୍ରାକ୍ଷମାଳା ପିନ୍ଧୁଥିଲେ । ତୁଳସୀ ଚଉରା ପୂଜା କରୁଥିଲେ । ସେଥିପାଇଁ ସେମାନେ ଚାଲିଗଲା ପରେ ମଧ୍ୟ ମୁଁ ଚଉରା ଭାଙ୍ଗିନାହିଁ ।

: ଭଲ କରିଛ । ଏ ଘର ସାଙ୍ଗକୁ ଏ ତୁଳସୀ ଚଉରା ବେଶ୍ ମାନିଛି । – ମୁଁ ତାକୁ ଉତ୍ସାହିତ କରିବା ପାଇଁ ମନ୍ତବ୍ୟ କଲି ।

କେହି ଜଣେ ମାଠିଆଟିରେ ପିଇବା ପାଣି ଆଣି ଦେଇଗଲା ।

ଘରବାଲା ପଚାରିଲା– ଆପଣ ତ ରାତିରେ ଚାଲିଯିବେ । ରୋଷେଇ ବ୍ୟବସ୍ଥା କରିବି ?

ମୁଁ ମନାକଲି । କହିଲି– ଆସିଲାବେଳେ ପାଞ୍ଜିମରୁ ପାଉଁରୁଟି ଆଉ କଦଳୀ ନେଇଆସିଛୁ । ସେଥିରେ ଚଳିଯିବ । ତମେ ଆମ ପାଇଁ ବ୍ୟସ୍ତ ହୁଅନାହିଁ ।

ଲୋକଟି ଟିକେ ବ୍ୟସ୍ତହେଲା ।

କହିଲା– କାଲି ରବିବାର । କାଲାନ୍‌ଗୁଟେ ବାଲୁକାବେଳାରେ ହିପ୍‌ପିମାନଙ୍କ ହାଟ ବସିବ । ଫ୍ଲି ମାର୍କେଟ୍ । ନୀଳ ମାଛିମାନଙ୍କ ହାଟ ! ନାନା ରଙ୍ଗର ପୋଷାକ ପିନ୍ଧି ହିପ୍‌ପି, ହିପ୍‌ପିଣୀମାନେ ରୁଣ୍ଡ ହେବେ । ହୋ-ହଲ୍ଲା । ମିଉଜିକ୍ ବାଜିବ । ନୂଆ, ପୁରୁଣା ବିଦେଶୀ ଜିନ୍, କ୍ୟାମେରା, ଘଣ୍ଟା, ପୁଲ୍‌ଓଭାର ଇତ୍ୟାଦି ଶସ୍ତାରେ ବିକ୍ରି ହେବ । କାଲିପର୍ଯ୍ୟନ୍ତ ରହିଯାଆନ୍ତୁନା ! କାଲାନ୍‌ଗୁଟେ ଆସି ବିଦେଶୀ ଜିନିଷ କିଛି ଶସ୍ତାରେ କିଣି ନନେବେ କାହିଁକି ? ଅନେକ ଦେଶୀ ସାହେବ ତ ଗୋରା ସାହେବଙ୍କଠାରୁ ଏଇସବୁ ଜିନିଷ କିଣିବାପାଇଁ ଏଠାକୁ ଆସନ୍ତି ।

ହିପ୍‌ପିଣୀ ଆମ କଥାରେ କାନ ନଦେଇ କାର୍ପେଟ୍ ଉପରେ ଚିତ୍ ହୋଇ ଶୋଇଯାଇଥିଲା ।

ମୁଁ ତାକୁ ପଚାରିଲି– ଏସବୁ ଜିନିଷ ଶସ୍ତାରେ କିଏ କାହିଁକି ବିକ୍ରି କରେ ?

: ହିପ୍‌ପିମାନେ । ପାଖରେ ଥିବା ଡଲାର୍, ମାର୍କ, ଶିଲିଂ, ପାଉଣ୍ଡ୍ ସରିଗଲେ ସାଙ୍ଗରେ ଆଣିଥିବା କ୍ୟାମେରା, ୱାଚ୍, ଟ୍ରାନ୍‌ଜିଷ୍ଟର, ଟେପ୍ ରେକର୍ଡର ଏପରିକି ନିଜେ ପିନ୍ଧିଥିବା ଜିନ୍, ଜ୍ୟାକେଟ୍, ଚଷମା, ଫାଉଣ୍ଟେନ୍ ପେନ୍ ମଧ୍ୟ ସେମାନେ ବିକ୍ରି କରିଦିଅନ୍ତି । ରହିବା ଖର୍ଚ୍ଚ ଆଉ ନିଶାବଟିକା, ଇଞ୍ଜେକ୍‌ସନ ଖର୍ଚ୍ଚ ଉଠାଇବା ପାଇଁ । ଶସ୍ତାରେ ନବିକିଲେ ଏସବୁ ଜିନିଷ କିଣିବ କିଏ ? ଆଉ ନିଶା କରିବା ପାଇଁ ଟଙ୍କାର ଆବଶ୍ୟକତା ଏମାନଙ୍କର ଏତେ ଜରୁରୀ ହୋଇପଡ଼େ ଯେ, ପଚାଶ, ଶହେ ଟଙ୍କାରେ ଚାରିଶହ, ପାଞ୍ଚଶହ ଟଙ୍କାର କ୍ୟାମେରା, ରିଷ୍ଟୱାଚ୍ ମଧ୍ୟ ଏମାନେ ହିପ୍‌ପି-ହାଟରେ ବିକିଦିଅନ୍ତି ! ଆପଣ କାଲି ପର୍ଯ୍ୟନ୍ତ ରହିଯାଆନ୍ତୁନା, ଦେଖିବେ ! – ଲୋକଟି ମତେ ପ୍ରଲୋଭିତ କରିବାକୁ ଲାଗିଲା ।

: ଏ ସବୁଥିରେ ଦୁଇ ନମ୍ବର ନକଲି ଜିନିଷ ନଥାଏ ତ ! – ମୁଁ ପ୍ରସଙ୍ଗକ୍ରମେ ପ୍ରଶ୍ନ କଲି ।

ଗୋଆନିଜ୍ ଘରବାଲା ଟିକିଏ ଘାବରେଇଗଲା ମୋ ପ୍ରଶ୍ନ ଶୁଣି । ମତେ ଫ୍ଲି ମାର୍କେଟ୍ ପ୍ରତି ଆକୃଷ୍ଟ କରିବାର ଉତ୍ସାହ ତା'ର ମଳିନ ପଡ଼ିଆସିଲା । ସେ ଖୁବ୍ ଚାପାକଣ୍ଠରେ କହିଲା– ଆଗେ ଦୁଇ ନମ୍ବରି ଜିନିଷ ନଥିଲା । ଗୋରା ହିପ୍‌ପିମାନେ ନିଜ ନିଜ ଦେଶରୁ ଆଣିଥିବା ଖାଣ୍ଟି ଜିନିଷ ସବୁ ବିକ୍ରି କରୁଥିଲେ । କିନ୍ତୁ ବିଦେଶୀ ହିପ୍‌ପିମାନଙ୍କ ସହିତ ଆମ ଦେଶୀ ହିପ୍‌ପିମାନେ ମିଶି ନୀଳମାଛିର ହାଟରେ ଅନେକ କଳାମାଛି ମଧ୍ୟ ଭର୍ତ୍ତି କରିଦେଉଛନ୍ତି । ଦାମନ୍‌ରୁ ଜଳ ପଥରେ ଯେଉଁ ସବୁ ଚୋରା ବିଦେଶୀ ଜିନିଷ ଆସୁଛି, ଇଣ୍ଡିୟାନ୍ କଷ୍ଟମ୍ ଡିପାର୍ଟମେଣ୍ଟ ଆଖିରେ ଧୂଳି ଦେଇ ସେ ସବୁ ଜିନିଷ ଚାଲିଆସୁଛି ଗୋଆ । ତା' ସହିତ ମିଶିଯାଉଛି କିଛି କିଛି ଦୁଇ ନମ୍ବରି ଭେଜାଲ୍ ମାଲ୍ । ସେଇ ଚୋରା ମାଲ୍‌ର ଦଲାଲମାନେ ହିପ୍‌ପିମାନଙ୍କ ଜରିଆରେ ସେ ସବୁ ମାଲ୍ ଫ୍ଲି ମାର୍କେଟରେ ବିକ୍ରି କରିଦେଉଛନ୍ତି । କିନ୍ତୁ ଆପଣ ସେଥିପାଇଁ ଚିନ୍ତା କରନ୍ତୁନାହିଁ । ମୁଁ ଆପଣଙ୍କ ସାଙ୍ଗରେ ଯିବି । କିଏ ଅସଲି ମାଲ୍, କିଏ ଭେଜାଲ୍– ସେ କଥା ମୋ କଷଟି ପଥରର ଆଖି ତୋଳା ଠିକ୍ ବାଛିଦେବ ।

ହିପ୍ପିମାନେ ଗୋଆକୁ ବହୁ ସଂଖ୍ୟାରେ ଆସିବା ପରେ ଗୋଆର ପର୍ତ୍ତୁଗୀଜ୍ ପ୍ରଭାବିତ ସଂସ୍କୃତିରେ ବେଶୀ ଅଦଳ ବଦଳ ହେଉ କି ନହେଉ ଅର୍ଥନୀତିରେ କିଛି ପରିମାଣରେ ଆଖିରେ ପଡ଼ିଲାଭଳି ପରିବର୍ତ୍ତନ ଘଟିଛି ନିଶ୍ଚୟ । ଫ୍ଲି ମାର୍କେଟ୍‌କୁ ନେଇ ଗଢ଼ିଉଠିଛି ଏକ ନୂଆ ହିପ୍ପି ଇଣ୍ଡଷ୍ଟ୍ରି ! ମତ୍ସ୍ୟଜୀବୀ ଧୀବର ମତ୍ସ୍ୟମୃଗୟା ଛାଡ଼ିଦେଇ ହିପ୍ପି ଧରିବାପାଇଁ ଜାଲ ବିଛାଇ ଅପେକ୍ଷା କରି ବସୁଛି ।

: ବିଦେଶୀ ଚିଜ କିଣିବାକୁ କାଲି ପର୍ଯ୍ୟନ୍ତ ରହିବେ ସାର୍ ! – ଘରବାଲା ମତେ ଆଗ୍ରହ ସହିତ ପ୍ରଶ୍ନ କଲା ।

କିନ୍ତୁ ମୁଁ ବିଦେଶୀ ଜିନିଷ କିଣିବି କଅଣ ? ମୋ ସହିତ ଆସିଥିବା ବିଦେଶିନୀ ଯେ ଘର ଭିତରେ ନାହିଁ । ଅଥଚ ଅଳ୍ପ ସମୟ ଆଗରୁ ନଡ଼ିଆ କତାର କାର୍ପେଟ୍‌ରେ ଚିତ୍ ହୋଇ ଶୋଇଥିଲା ।

ଏହି ସମୟରେ ଶୁଣାଗଲା ଖୋଳ କରତାଳ ଧ୍ୱନି । ହରେକୃଷ୍ଣ ହରେରାମ ସଂକୀର୍ତ୍ତନ । ମୁଁ ବାହାରକୁ ମୁହଁ କାଢ଼ି ଦେଖିଲି, ଜଣେ ଦୀର୍ଘକାୟ ହିପ୍ପିସାହେବ ଆଗେ ଆଗେ ଗୋଟିଏ ମୃଦଙ୍ଗ ବଜାଇ ବଜାଇ ଆସୁଛନ୍ତି । ଗେରୁଆ ରଙ୍ଗର ଆଣ୍ଠୁଲୁଚା ଲୁଗା ପିନ୍ଧିଛନ୍ତି । ଛାତି, ମୁଣ୍ଡରେ ତିଳକ ଚିତା । ବେକରେ ରୁଦ୍ରାକ୍ଷମାଳ । ତାଙ୍କ ମୃଦଙ୍ଗ ବାଦ୍ୟ ସହିତ ତାଳ ଧରି କୀର୍ତ୍ତନ ଗାଉଛନ୍ତି ଦଶ-ବାର ଜଣ ହିପ୍ପି, ହିପ୍ପିଣୀ । ସ୍ଥାନୀୟ ପିଲାମାନେ ମଧ୍ୟ ଦୁଆ ଧରୁଛନ୍ତି । ସେଇମାନଙ୍କ ମଝିରେ ଦୁଇ ହାତ ଉପରକୁ ଟେକି ମୋର ସଙ୍ଗିନୀ-ହିପ୍ପିଣୀ ମଧ୍ୟ କୀର୍ତ୍ତନ ଗାଉଛି, ହରେକୃଷ୍ଣ, ହରେରାମ !

ନା, ହରିନାମ କୀର୍ତ୍ତନରେ ସେମାନଙ୍କର କୌଣସି ଲୋକଦେଖାଣିଆ ଛଳନା ନାହିଁ । ସେମାନେ ଶ୍ରୀଚୈତନ୍ୟଙ୍କ ପରମ ଭକ୍ତ ଭଳି ତନ୍ମୟ ହୋଇ କୀର୍ତ୍ତନ କରୁଛନ୍ତି । ହିତାହିତ ଜ୍ଞାନ ଲୋପ ପାଇ ନଥିଲେ ମଧ୍ୟ କୀର୍ତ୍ତନ କଲାବେଳେ ସେମାନେ ଯେ ଆତ୍ମ-ବିସ୍ମୃତ ହୋଇଯାଉଛନ୍ତି; ସେମାନଙ୍କ ପାଦର ଛନ୍ଦ ପତନରୁ ସେ କଥା ଜଣାପଡ଼ିଯାଉଛି । ଏମାନେ ବୋଧହୁଏ କୃଷ୍ଣପନ୍ଥୀ ହିପ୍ପୀ । ତାନ୍ତ୍ରିକ-ବୌଦ୍ଧ ମତବାଦୀ ନୁହନ୍ତି । ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ବିସ୍ତାର ଫଳରେ ଭାରତୀୟମାନଙ୍କ ମନରୁ ଏହି ଧର୍ମଭାବନା କ୍ରମଶଃ ଲୋପ ପାଇ ଯିବାକୁ ବସିଥିବାବେଳେ ପାଶ୍ଚାତ୍ୟ ଦେଶର ଏହି ସମାଜ-ବିଦ୍ରୋହୀମାନେ ସେହି ଆଧ୍ୟାତ୍ମିକ ଚିନ୍ତାକୁ ଆଉ ଥରେ ଜୀବନ୍ୟାସ ଦେଉଛନ୍ତି ।

ସେମାନେ ଆମ ପର୍ଣ୍ଣ-କୁଟୀରର ନିକଟବର୍ତ୍ତୀ ହେବାମାତ୍ରେ ମୋ ସହିତ କଥାବାର୍ତ୍ତା କରୁଥିବା ଗୋଆନିଜ ଜଣକ ହଠାତ୍ ଯାଇ ସେ କୀର୍ତ୍ତନ ଦଳରେ ମିଶିଗଲା । ଦୁଇବାହୁ ଉପରକୁ ଟେକି କୀର୍ତ୍ତନର ଦୁଆ ଧରିଲା ।

ମୁଁ ଏକାକୀ ରହିଗଲି । ସୁଅ ମୁହଁରେ ନିଜକୁ ଭସାଇ ଦେଇ ନପାରିବାର ଅକ୍ଷମତାରେ ମୋର ମୁହଁ ବିବର୍ଣ୍ଣ ହୋଇଗଲା ।



## ଆଗ୍ନେୟଗିରିରେ ବଣଭୋଜି



ଅନେକ ହିପ୍‌ପି ଆଉ ହିପ୍‌ପିଣୀଙ୍କ ସହିତ ପରିଚୟ ହେଲା ।

ମୁଁ ଯେ ଜଣେ ଲେଖକ ଆଉ ଯାଯାବର; ଏକଥା ମୋର ସହଯାତ୍ରିଣୀଠାରୁ ଶୁଣିଲା ପରେ ସେମାନେ ଉତ୍ସୁକ ଆଖିରେ, ଉନ୍ମୁଖ ହୃଦୟରେ ମୋ ଚାରିପଟେ ଘେରିଗଲେ ।

ସେମାନଙ୍କ ଭିତରୁ ଜଣେ କହିଲା– ମୁଁ ପୃଥିବୀରେ ଏଭଳି ଜଣେ ଲେଖକ ଦେଖିନାହିଁ, ଯେ କେବଳ ଭ୍ରମଣ କରେ ଆଉ ଲେଖେ । ସବୁ କଥା ଇଣ୍ଡିଆରେ ସମ୍ଭବ । ଇଣ୍ଡିଆ ଗୁରୁ ଆଉ ଦେବତାମାନଙ୍କ ଦେଶ । ଅଗଣିତ ଦେବତା । ଯାହାର ଯେମିତି ଇଚ୍ଛା, ସେମିତି ଏକ ଦେବତା ବାଛି ନେଇ ସେ ପୂଜା କରିପାରେ । ଆଉ ଇଣ୍ଡିୟାନ୍ ଗଡ୍‌ମାନେ ହିଁ ଦୈହିକ ପ୍ରେମକୁ ଅଧିକ ମହତ୍ତ୍ୱ ଦିଅନ୍ତି । ସେଥିପାଇଁ ଆମ ଭଳି ପ୍ରେମିକ ମଣିଷମାନେ ଭାରତୀୟ ଦେବତାମାନଙ୍କୁ ଅଧିକ ଆପଣାର ମନେକରନ୍ତି ।

ମୁଁ ହସି ହସି ଉତ୍ତରଦେଲି– ଖ୍ରୀଷ୍ଟିୟାନ୍ ଓ ହିନ୍ଦୁ ଦେବତାମାନେ ଅନ୍ୟ ଏକ ଦୃଷ୍ଟିରୁ କିନ୍ତୁ ଏକାଭଳି । ଯୀଶୁଖ୍ରୀଷ୍ଟ, ମହମ୍ମଦ ପଡ଼ିଆରେ ମେଷ ଚାରଣ କରୁଥିଲେ; କୃଷ୍ଣ ବଳରାମ ଗାଈ ଚରାଉଥିଲେ ମଥୁରାରେ । ଠିକ୍ ନା ?

: ଏକଦମ୍ ଠିକ୍ । କିନ୍ତୁ କୃଷ୍ଣ, ରାମଚନ୍ଦ୍ରଙ୍କ ଭଳି ପ୍ରେମିକ-ଦେବତା ବିଶ୍ୱର ଧର୍ମ-ସାହିତ୍ୟରେ ବିରଳ । ପ୍ରେମ ହୃଦୟର ଜିନିଷ । ଇଣ୍ଡିୟାନ୍ ଗଡ୍‌ମାନଙ୍କ ହୃଦୟ ବୋଲି ଏକ ମୂଲ୍ୟବାନ ଜିନିଷ ଥିଲା । ସେଇ ହୃଦୟର ସନ୍ଧାନରେ ତ ଆମେ ଏ ଦେଶକୁ ସ୍ୱଦେଶ କରିପାରିଛୁ ! କିନ୍ତୁ ଇଣ୍ଡିୟାନ୍ ପୋଲିସ୍ ଭିତରେ ହୃଦୟ ନାମକ ପଦାର୍ଥଟା ନାହିଁ କାହିଁକି ଭାଇ ! କାଲି ଦେହରୁ ପୋଷାକ ଖୋଲି ସମୁଦ୍ରବେଳାରେ ରୌଦ୍ର ସ୍ନାନ କରୁଥିବାବେଳେ ହଠାତ୍ ଝାମେଲା ।

''ସରି ମାଡାମ୍ ! ଏ ସମୁଦ୍ରତଟରେ ଉଲଗ୍ନ ହେବା ବେଆଇନ୍ । ମୁଁ ଆପଣଙ୍କୁ ଗିରଫ କଲି ।''

''ଏ ଦେଶରେ ପିଲାମାନେ ଜନ୍ମ ହେଲାବେଳେ କଅଣ ପୋଷାକ ପିନ୍ଧି ଜନ୍ମ ହୁଅନ୍ତି ? ନା, ସେମାନଙ୍କୁ ସମସ୍ତଙ୍କୁ ପୋଲିସ ଗିରଫ କରେ ?''

''ଆପଣ ତ ଆଉ ଶିଶୁ ନୁହନ୍ତି ! ଆପଣଙ୍କ ଉଲଗ୍ନ ଦେହ ଦାଉ ଦାଉ ଜଳୁଥିବା ଅଗ୍ନି ଭଳି । ଅନେକ ପତଙ୍ଗ ଏ ନିଆଁରେ ପୋଡ଼ିଯିବାର ସମ୍ଭାବନା । ସେଭଳି କୌଣସି ଦୁର୍ଘଟଣା ଯେପରି ନଘଟେ ସେଥିପାଇଁ ସରକାର ନଗ୍ନତା-ବିରୋଧୀ ଆଇନ୍ ପାଶ୍ କରିଛନ୍ତି ।''

''ମୋ ଦେହର ନଗ୍ନ ସୌନ୍ଦର୍ଯ୍ୟ ଆପଣ ତ ବେଶ୍ ଉପଭୋଗ କରୁଛନ୍ତି ! କାହିଁ ଆପଣଙ୍କ ଦେହରେ କେଉଁଠି ନିଆଁ ଲାଗିଯାଇଥିବାର ଚିହ୍ନ ମୁଁ ଦେଖିପାରୁନି ! ଆପଣଙ୍କୁ ଅବା ଏ ସମୁଦ୍ର ତଟର ନିଛାଟିଆ ଅଞ୍ଚଳକୁ ଆସିବା ପାଇଁ କିଏ କହିଛି ?''

''ମାଡାମ୍ ! ସବୁ ନିଆଁରେ ଧୂଆ ନଥାଏ । ସେଥିପାଇଁ ମୋ ଦେହରେ ନିଆଁ ଲାଗି ଥିବାର ଦୃଶ୍ୟ ହୁଏତ ଆପଣ ଦେଖି ପାରୁନାହାନ୍ତି । ସକାଳ ପହରୁ ମୁଁ ଡିଉଟିରେ ଅଛି । ପେଟ ଭିତରେ ନିଆଁ ଜଳୁଛି । ବାହାର କରନ୍ତୁ ଦୁଇଟା ଟଙ୍କା— ମୁଁ ଦୁଇଟା କଷି ନଡ଼ିଆର ପାଣି ପିଇ ପେଟର ନିଆଁକୁ ଆଗ ଲିଭାଇ ଦିଏ । ଆପଣ ମନ ଇଚ୍ଛା ଲଙ୍ଗୁଳି ମଶାଣି ଚଣ୍ଡୀ ହୋଇ ଖରା ପୁହାଉଥାଆନ୍ତୁ ।''

ମଧ୍ୟବୟସ୍କା ଶ୍ୱେତାଙ୍ଗିନୀଙ୍କ ଶେଷ ସଂଳାପ କେଇ ଧାଡ଼ି ଶୁଣି ଅନ୍ୟ ହିପ୍‌ପି-ହିପ୍‌ପିଣୀମାନେ ହସିଉଠିଲେ । ସମବେତ ହାସ୍ୟରୋଳରେ ମୁଁ ମଧ୍ୟ ଯୋଗଦେଇଦେଲି ।

ଜଣେ ପାତିମୁହାଁ ହିପ୍‌ପି ମନ୍ତବ୍ୟ କଲା— ଇଣ୍ଡିୟାର ଦାରିଦ୍ର୍ୟ ତା'ର ପ୍ରଧାନ ସମ୍ପଦ ଆଉ ପରମ ସୌନ୍ଦର୍ଯ୍ୟ । ଗ୍ରୀନ୍ କୋକାନଟ୍‌ର ପାଣି ପିଇ ପେଟର ନିଆଁ ଲିଭାଉ ଲିଭାଉ ସେମାନଙ୍କର ଜୀବନ-ସନ୍ଧ୍ୟା ଆସିଯାଏ । ଅନ୍ୟ ଦେଶରେ ଯୁଦ୍ଧର ନିଆଁ ଲଗାଇବାକୁ ସେମାନଙ୍କୁ ପରମାଣୁ ବୋମା ତିଆରି କରିବାକୁ ପଡ଼େ ନାହିଁ । ଉଦର ହିଁ ସେମାନଙ୍କ ପାଇଁ ପରମବ୍ରହ୍ମ । ସେମାନେ ଠିକ୍ ବ୍ରହ୍ମକୁ ଚିହ୍ନିପାରିଛନ୍ତି । ମୋକ୍ଷ ପ୍ରାପ୍ତି ପାଇଁ ବ୍ରହ୍ମକୁ ଚିହ୍ନିବାକୁ ହେଲେ କିନ୍ତୁ ଆମ ପଛେ ପଛେ ପିମ୍ପୁଡ଼ି ଭଳି ଧାଡ଼ି ବାନ୍ଧି ସାରା ୟୁରୋପ-ଆମେରିକାକୁ ଇଣ୍ଡିୟାକୁ ଆସିବାକୁ ହେବ ।''

ମନ୍ତବ୍ୟଟି ଭାରତବର୍ଷର ଦାରିଦ୍ର୍ୟ ପ୍ରତି ପ୍ରଶଂସା କିମ୍ବା ପରିହାସ, ଠିକ୍ ସେଇ ମୁହୂର୍ତ୍ତରେ ମୁଁ ବୁଝି ପାରିଲି ନାହିଁ । କିନ୍ତୁ ସେମାନେ ଯେ ସ୍ୱେଚ୍ଛାରେ ଐଶ୍ୱର୍ଯ୍ୟକୁ ପାଦରେ ଏଡ଼ାଇଦେଇ ଏ ଦେଶରେ ସ୍ୱତଃ ଦାରିଦ୍ର୍ୟକୁ ବରଣ କରିନେଇଛନ୍ତି, ସେକଥା ସେମାନଙ୍କ ଖାଦ୍ୟ ଓ ପୋଷାକ ଦେଖି ବୁଝିବାପାଇଁ ମତେ କଷ୍ଟ ହୋଇନଥିଲା ।

ସେମାନେ ହୁଏତ ଗୋଟିଏ ଉଦ୍‌ଭ୍ରାନ୍ତ ପ୍ରଜନ୍ମର ଦିଗ୍‌ଭ୍ରାନ୍ତ ତାରୁଣ୍ୟ । ସେମାନଙ୍କର ନିଶାଗ୍ରସ୍ତ ଢୁଳୁ ଢୁଳୁ ଆଖି, ଖାଲି ପାଦ, ଛିନ୍ନ ପୋଷାକ ଦେଖି ସେମାନଙ୍କ ଦାର୍ଶନିକ ନିଷ୍ଠାକୁ ସନ୍ଦେହ କରିହୁଏ ନାହିଁ । ସେମାନେ ଜୀବନର ଏକ ନିର୍ଦ୍ଦିଷ୍ଟ ଦର୍ଶନରେ ବିଶ୍ୱାସ ରଖି ନିଜ ଯୌବନକୁ ଧୂପକାଠି ଭଳି ଜାଳିଯାଉଛନ୍ତି । ପ୍ରଥମେ ହୁଏତ ମୁକ୍ତ-ଯୌନ ଜୀବନର ତୃଷ୍ଣା, ଜୈବିକ ପ୍ରବୃତ୍ତିର ତାଡ଼ନାରେ ପ୍ରତିଷ୍ଠିତ ସମାଜ ବ୍ୟବସ୍ଥା ବିରୁଦ୍ଧରେ ସେମାନେ ପରିବାର, ସ୍ୱଦେଶ, ସମାଜ ଛାଡ଼ି ହିପ୍‌ପି ହୋଇଥିଲେ । କିନ୍ତୁ ସେଇଭଳି ଉଦ୍‌ଶୃଙ୍ଖଳ, ଉଦ୍ଦେଶ୍ୟହୀନ

ଭାବରେ ବର୍ଷ ବର୍ଷ ଧରି ଜୀବନ ଯାପନ କରି ଗୋଆର ଏ ସମୁଦ୍ରବେଳାରେ ପହଞ୍ଚିଲା ବେଳକୁ ଅନେକ ଯୌନ-ଆବେଦନ, ଯୌନ-କାମାନ ହରାଇ ସନ୍ନ୍ୟାସୀ ହୋଇଗଲେଣି । ସେମାନେ ପ୍ରକୃତରେ ମୋକ୍ଷ ପାଇବେ କି ନାହିଁ ସେ ଭିନ୍ନ କଥା; କିନ୍ତୁ ସାଂସାରିକ ବନ୍ଧନ ଓ ସମ୍ଭୋଗ ଲିପ୍ସାରୁ ଯେ ସେମାନେ ମୁକ୍ତି ପାଇଯାଇଛନ୍ତି, ମୋ ସହଯାତ୍ରିଣୀକୁ ଲକ୍ଷ୍ୟ କରି ସେକଥା ମୁଁ ବେଶ୍ ବୁଝିପାରିଥିଲି ।

ସେମାନେ ହୋ — ହଲ୍ଲା କରି ଫେରିଗଲେ ।

ମୋ ପାଖରେ କେବଳ ଏକ ପରିତ୍ୟକ୍ତ, ଶୂନ୍ୟ ମଦ ବୋତଲ ଭଳି ପଡ଼ିଥିଲା ସେଇ ହିପ୍ପିଣୀ । ଅନ୍ୟାମନସ୍କତାରେ ଦୃଷ୍ଟି ତା'ର ଉଦାସ, ଦେହ କ୍ଳାନ୍ତ । କାହିଁ କେଉଁ ଐଶ୍ୱର୍ଯ୍ୟର ଅଳକାପୁରୀ ଛାଡ଼ି ନଡ଼ିଆକତାର ଗାଲିଚା ବିଛା ଝାଟିମାଟି ଘରେ ଆଣ୍ଠୁ ଉପରେ ମୁହଁମାଡ଼ି ବସିରହିଛି ।

ମୁଁ ତାକୁ ତା'ର ପୂର୍ବଜନ୍ମ କଥା ସ୍ମରଣ କରାଇଦେବା ପାଇଁ କୌତୂହଳରେ ପଚାରିଲି— ଘର କଥା ମନେପଡୁଛି ? ଲସ୍ ଏଞ୍ଜେଲ୍ସର ନିଜ ଘର । ଡାଡି, ମମି ? ମନେପଡୁଛି ?

ସନ୍ଦିଗ୍ଧ, ବିସ୍ମୟଚକିତ ଶାଣିତ ଦୃଷ୍ଟିରେ ମୋ ଆଡ଼କୁ ଅନାଇ ସେ ଉତ୍ତରଦେଲା— ହଠାତ୍ ମୁଁ ଅନେକଦିନୁ ଛାଡ଼ିଆସିଥିବା ଘର କଥା ମନେପକାଇଦେଲେ କାହିଁକି ? ଫ୍ଲାସ ବ୍ୟାକ୍ ? ଲେଖକମାନଙ୍କର ଏଇଟା ଗୋଟାଏ ବଡ଼ ଦୋଷ । ନା ? ନଷ୍ଟାଲ୍‌ଜିଆ ଆଇ ହେଟ୍...

ମୁଁ ତାକୁ କୁତୁକୁତୁ କଲାଭଳି ଦୁଗୁଣେଇ ହୋଇ ପଚାରିଲି— ସତ କୁହ, ସ୍ୱଦେଶ, ଆତ୍ମୀୟସ୍ୱଜନ ମନେ ପଡ଼ନ୍ତନାହିଁ ? ଜଣଜଣଙ୍କର ପୂର୍ବଜନ୍ମର କଥା ମନେପଡ଼େ, ଆଉ ବର୍ଷ କେତୋଟି ତଳେ ଅଭିମାନ କରି ଛାଡ଼ିଆସିଥିବା ତମର ଘରକଥା ମନେପଡ଼େନା ?

ସେ କିଛି ସମୟ ନିଶ୍ଚଳ ଦୃଷ୍ଟିରେ ମତେ ଅନେଇରହିଲା । ତା'ପରେ ସ୍ୱତଃ ତାର ନିଶ୍ଚଳ ଦୃଷ୍ଟି ସଜଳ ହୋଇଆସିଲା । ବଦଳିଗଲା ତା'ର ମୁହଁର ଲାଣ୍ଡସ୍କେପ୍ ।

ବଡ଼ ଭାବପ୍ରବଣ ଭାବରେ ସେ ଉତ୍ତରଦେଲା— ନା, ମନେ କେବେ ପଡୁ ନଥିଲା । କିନ୍ତୁ ବର୍ତ୍ତମାନ ମନେପଡୁଛି । ଲସ୍‌ଏଞ୍ଜେଲସ୍‌ର ଆପାର୍ଟମେଣ୍ଟରେ ମୋର ସେଇ କୋଠରି କଥା... ମିଷ୍ଟର ମେଇଲାର୍ ! ମୁଁ ବର୍ତ୍ତମାନ ସୁଦ୍ଧା ଦେଖିପାରୁଛି, ମୋର ନରମ ଗଦି ବିଛା ବେଡ୍, ସୋଫା ସେଟ୍, କୋଠରିର ଏ କାନ୍ଥରୁ ସେକାନ୍ଥ ପର୍ଯ୍ୟନ୍ତ ଲାଇଲାକ ରଙ୍ଗର କାର୍ପେଟ, କାଚର ସେଣ୍ଟାର ଟେବୁଲ୍, କୋଠରୀର ଗୋଟିଏ କୋଣରେ ଫିସାର ମିଉଜିକ୍ ସିଷ୍ଟମ୍ ଆଉ ଆରପାଖରେ ରଙ୍ଗୀନ ଟେଲିଭିଜନ ସେଟ୍ ।

ମୁଁ ତା'ର ଭାବପ୍ରବଣତାର କଞ୍ଚାମାଲକୁ ତିଆରି—ପଦାର୍ଥରେ ପରିଣତ କରିବାପାଇଁ ପଚାରିଲି— ବାସ୍, ଏତିକି । ଆଉ କିଛି ଦେଖିପାରୁଛ ?

ସେ ମୋ କାନ୍ଧରେ ହାତ ରଖି କହିଲା— ହଁ, ଦେଖିପାରୁଛି । ଦରକାର ମୋଟା ଘନ ସବୁଜ ରଙ୍ଗର ପରଦାକୁ ଠେଲିଦେଇ ଜଣେ ଉଦ୍ଭିନ୍ନ-ଯୌବନା ମାର୍କିନ୍ ତରୁଣୀ ସେ କୋଠରିରେ

ପ୍ରବେଶ କରୁଛି । ତା'ର ଦୁଇ ଆଖିରେ ଅନେକ ନୀଳ ନୀଳ ନିବିଡ଼ ସ୍ୱପ୍ନ ଖୁନ୍ଦି ହୋଇରହିଛି । ସେ କିଛି ସମୟ ନିଜ ବିଛଣାରେ, କିଛି ସମୟ ସେଫା ଉପରେ ବସୁଛି । ଟେଲିଭିଜନ ସୁଇଚ୍ ଅନ୍ କରୁଛି, ପୁଣି ବନ୍ଦ କରୁଛି । କେତେଟା ପପ୍ ମିଉଜିକ୍‌ର ରେକର୍ଡ ଶୁଣୁଛି । ପୁଣି ବିରକ୍ତ ହୋଇଯାଉଛି । ସେ ନିଜକୁ ନିଜେ ପ୍ରଶ୍ନ କରୁଛି, ସବୁ ତ ବରଫ ଭଳି ଥଣ୍ଡା, କେଉଁଠି ଉତ୍ତେଜନାର ଉଷ୍ମତା ? ସେ ନିଜ ଆଖି ବନ୍ଦ କରି ନିଜ ପ୍ୟାଣ୍ଟିଜ୍ ଭିତରେ ହାତ ଭର୍ତ୍ତିକରୁଛି... ଟଚିଂ ହାର୍ ସେକ୍‌ସ... କିନ୍ତୁ ସେଠାରେ ମଧ ବରଫ ଜମିଯାଇଛି... ଏଥର କେବଳ ବିରକ୍ତି ନୁହେଁ ବିତୃଷ୍ଣାରେ ଆଖି ଖୋଲି ସେ ଦେଓ୍ୱାଲ୍‌କୁ ଚାହୁଁଛି... ପ୍ରଥମ ଚନ୍ଦ୍ର ଗ୍ରହରେ ପାଦ ରଖିଥିବା ଆର୍ମଷ୍ଟ୍ରଙ୍ଗଙ୍କ ଛବି ଝୁଲୁଛି ଦେଓ୍ୱାଲ୍‌ରେ; ତା'ର ଠିକ୍ ପାଖକୁ ପରମାଣୁ ବୋମା ବିଧ୍ୱସ୍ତ ହିରୋସୀମାର ଏକ ଦୃଶ୍ୟ... ଝିଅଟିର ଆଖି ଦୁଇଟି ହଠାତ୍ ବିସ୍ଫାରିତ ହୋଇଗଲା... ମୁହଁରେ ଫୁଟିଉଠିଲା ଆତଙ୍କର ଚିହ୍ନ... ସେ ନିଜ ଦୁଇ ହାତ ପାପୁଲିରେ ମୁହଁକୁ ଚାପି ଧରି ଚିତ୍କାର କରିବାକୁ ଚେଷ୍ଟା କଲା, କିନ୍ତୁ ପାରିଲା ନାହିଁ । ଅନେକ ଅବ୍ୟକ୍ତ ଚିତ୍କାର, ଅସ୍ଫୁଟ ସ୍ୱପ୍ନ ତା' ଛାତି ଭିତରେ କଫ ଭଳି ଜମିଯାଇଛି... ସେ ନିଜେ ନିଃଶ୍ୱାସ ନେବାକୁ କଷ୍ଟବୋଧ କରୁଛି...

: ତା'ପରେ ? ତା'ପରେ ସେ ଝିଅଟିର କଅଣ ହେଲା ? ... ମୁଁ କୌତୂହଳୀ କଣ୍ଠରେ ପ୍ରଶ୍ନ କଲି ।

: ତା'ପରେ ଅଣନିଃଶ୍ୱାସୀ ହୋଇ ସେ ଝିଅଟି ଘର ଛାଡ଼ି ରାସ୍ତା ଉପରକୁ ଓହ୍ଲାଇଗଲା । ଲକ୍ଷ୍ୟ କଲା, ରାସ୍ତା ଉପରେ ଯା–ଆସ କରୁଥିବା ଗାଡ଼ିରେ ଯେଉଁ ଲୋକମାନେ ବସିଛନ୍ତି ସେମାନେ ସମସ୍ତେ ଜଣେ ଜଣେ ଆତତାୟୀ ଭଳି ମନେହେଉଛନ୍ତି । ସମସ୍ତଙ୍କ ପାଖରେ ଯେମିତି ଗୋଟାଏ ଗୋଟାଏ ପରମାଣୁ ବୋମା ଅଛି... ସମସ୍ତଙ୍କ ଆଖି ସନ୍ଧାନ କରୁଛି ଏଭଳି ଏକ ଦେଶ, ଯେଉଁ ଦେଶ ଉପରେ ବୋମାଟା ପକାଇଦେଲେ ମଧ କେହି ସେମାନଙ୍କୁ ଯୁଦ୍ଧଖୋର ବୋଲି କହିବ ନାହିଁ ! ସେମାନଙ୍କ ସମସ୍ତଙ୍କ ପାଖରେ ପରମାଣୁ ବୋମା ଅଛି; କିନ୍ତୁ ସେମାନେ ସମସ୍ତେ ମୁହଁରେ ବିଶ୍ୱଶାନ୍ତି କଥା ଉଚ୍ଚାରଣ କରନ୍ତି ! ଝିଅଟି ମନେ ମନେ ଖୁବ୍ ଭୟ ପାଇଗଲା । ଭୟର ଉପଦ୍ରବରୁ ନିଜକୁ ବଞ୍ଚାଇବାପାଇଁ ସେ ଅଣନିଃଶ୍ୱାସୀ ହୋଇ ଦଉଡ଼ିବାକୁ ଲାଗିଲା... ତା'ର ପଛେ ପଛେ ଭୟ.. ସେ ଆଗେ ଆଗେ ଦୌଡୁଛି... ଦୌଡୁଛି...

ମୁଁ ମୃଦୁ ହସି କହିଲି– ଉଭିନ୍ନ-ଯୌବନା ମାର୍କିନ୍ ଝିଅ କେତେ ବାଟ ଅବା ଅଣନିଃଶ୍ୱାସ ହୋଇ ଦୌଡ଼ିପାରେ ? ଗୋଟାଏ ଜାଗାରେ ତ ତା'ର କଅଁଳ ପାଦ ଥକିପଡ଼ିବ ।

: ନା– ନା– ଭୟକୁ ପଛରେ ପକାଇ ଦେବାପାଇଁ ଆମେରିକାନ୍ ପୁଅ-ଝିଅମାନେ ବର୍ଷ ବର୍ଷ ଧରି ଦୌଡ଼ିପାରନ୍ତି । ଝିଅଟି ଦୌଡ଼ି ଦୌଡ଼ି ଛୁଟିଚାଲିଥିଲା । ନିଉୟର୍କର ଟାଇମ୍ ସ୍କୋୟାର ପାଖରେ ହଠାତ୍ ଜଣକ ସହିତ ଧକ୍‌କା ହୋଇଯିବାରୁ ସେ ପଡ଼ିଗଲା...

: ଆଉ ଯାହା ସହିତ ଧକ୍‌କା ହେଲା ସେ ଆମେରିକା ସାମରିକ ବିଭାଗର ଜଣେ କାପ୍‌ଟେନ୍ । ନା ? – ମୁଁ ତାକୁ ଚମକାଇ ଦେଇ ପ୍ରଶ୍ନ କଲି ।

: ଆପଣ କେମିତି ମୁଁ ନ କହିବା ଆଗରୁ ତା'ର ପରିଚୟ ଜାଣିଗଲେ ? – ବିଦେଶିନୀର ମୁହଁରେ ବିସ୍ମୟର ଭାଙ୍ଗ ପଡ଼ିଗଲା ।

: ଯେଉଁମାନେ ଗଳ୍ପ ଉପନ୍ୟାସ ଲେଖନ୍ତି, ସେମାନଙ୍କୁ ଏସବୁ କଥା ଜଣାଥାଏ । ପ୍ରତି ସଦ୍ୟଯୌବନା ନାରୀ ଜୀବନରେ ଏମିତି ଗୋଟାଏ ଦୁର୍ଘଟଣା ଘଟେ । ସବୁ ଦେଶରେ । ନିଉୟର୍କର ଟାଇମ୍ ସ୍କୋୟାର ହେଉଛି ଆମେରିକାର ବିଖ୍ୟାତ ସେକ୍ସ ମାର୍କେଟ୍ । ଏଠାରେ ଯୌନ-ବୁଭୁକ୍ଷୁ ବହୁ ଆମେରିକାନ୍ ସୈନିକ ଘୂରିବୁଲନ୍ତି...

: ହଁ, ସେ ଥିଲା ଜଣେ ସାମରିକ ବିଭାଗର କାପ୍‌ଟେନ୍ । ବୟସରେ ମୋ ଠାରୁ ଦଶ ପନ୍ଦର ବର୍ଷ ବଡ଼ । କିନ୍ତୁ ଭାରି ଚମତ୍କାର, ସୁଗଠିତ ଚେହେରା । ପୌରୁଷର ଦୀପ୍ତିରେ ମୁହଁ ତା'ର ଝଲମଲ୍ କରୁଥିଲା । ମତେ ତଳୁ ଉଠାଇ ସେ ପଚାରିଲା, ବୟସ୍କା-ବାଳିକା ! ଏତେ ରାତିରେ ଏକାକିନୀ କୁଆଡ଼େ ? ତମର ବୟଫ୍ରେଣ୍ଡ କାହିଁ ? ମୁଁ ତାକୁ ମୋର ବୟଫ୍ରେଣ୍ଡ ନୁହେଁ; ଭୟ ଅନୁସରଣ କରୁଥିବା କଥା କହିଲି । ସେ ହସିଲା । କହିଲା, ଯାହାର ଦେହରେ ଏଭଳି ସତେଜ ବନ୍ୟ-ଯୌବନ, ଭୟ ତା'ର ପଛେ ପଛେ ଅନୁସରଣ କରିବା ସ୍ୱାଭାବିକ । ଜଣେ ବଳିଷ୍ଠ ପୁରୁଷବନ୍ଧୁ ତମକୁ ଏ ଭୟର କବଳରୁ ରକ୍ଷା କରିପାରେ । ତା'ପରେ ସେ ଆଣ୍ଠୁମାଡ଼ି ବସି ତା' ନିକଟରେ ଥିବା ପିସ୍ତଲକୁ ମୋ ପାଦତଳେ ରଖି କହିଲା, ''ମୁଁ ଏ ଆଗ୍ନେୟାସ୍ତ୍ର ଛୁଇଁ ଶପଥ କରୁଛି, ପ୍ରାଣ ଦେଇ ମୁଁ ତମର ଭୟକୁ ଜୟକରିବି... ତମେ ତମର ପ୍ରଣୟ ଦେଇ ମତେ ଶକ୍ତିଦାନ କର''... ମିଷ୍ଟର ଇଣ୍ଡିୟାନ୍ ! ଜଣେ ସମର୍ଥ ପୁରୁଷ ପାଖରେ ନିଜକୁ ସମର୍ପଣ କରିଦେଲେ ନାରୀ ଯେ ଏଭଳି ନିର୍ଭୟ ଓ ନିଶ୍ଚିତ ହୋଇପାରେ, ସେକଥା ଜୀବନରେ ମୁଁ ପ୍ରଥମେ ଅନୁଭବ କରିଥିଲି । ତା'ପରେ ଆମେ ଦୁହେଁଯାକ ହାତ ଧରାଧରି ହୋଇ ଟାଇମ୍ ସ୍କୋୟାର୍ ଘୂରିବୁଲିଥିଲୁ ଦୁଇଟି ଲଘୁପକ୍ଷ ପ୍ରଜାପତି ଭଳି ! ସିନେମା ହଲ୍‌ରେ ବସି ପର୍ଣ୍ଣୋଛବି କିମ୍ବା ପିପ୍‌ଶୋ ଦେଖିଲାବେଳେ ତା'ର ହିଂସ୍ର ହାତ ମୋର କୁମାରୀ-ଦେହ ପରିକ୍ରମା କରିଥିଲା । ତା'ର ତୃଷିତ ଅଧର ମୋର କମ୍ପିତ, ସୁଗଠିତ ସ୍ତନାଗ୍ର ଦଂଶନ କଲାବେଳେ ହଠାତ୍ ମୁଁ ତାକୁ ପ୍ରଶ୍ନ କରିଥିଲି, ତମେ ଜଣେ ସାମରିକ ବିଭାଗର କାପ୍‌ଟେନ୍ । ତମ ପାଖରେ ପରମାଣୁ ବୋମା ନାହିଁ ? ସେ ମୋ ପ୍ରଶ୍ନ ଶୁଣି ରହସ୍ୟମୟ ଭାବରେ ହସିଥିଲା । ଏକ ମାୟାବୀ ଚାହାଣିରେ ମତେ ସମ୍ମୋହିତ କରି ଉତ୍ତରଦେଇଥିଲା, ପରମାଣୁ ବୋମା ନାହିଁ; ପୌରୁଷ ଅଛି; ଯାହା ପରମାଣୁ ବୋମାଠାରୁ ଆହୁରି ଶକ୍ତିଶାଳୀ । ଦିନେ ସେଇ ପୌରୁଷର ବିସ୍ଫୋରଣ ତମ କୌମାର୍ଯ୍ୟର ମହାଦେଶକୁ ଧ୍ୱଂସ କରିଦେବ । ତା'ର ସେଇ ପଦିଏ କଥା ଶୁଣି ମୁଁ ହଠାତ୍ ବୟସ୍କା ହୋଇଯାଇଥିଲି । ନିର୍ବୋଧଙ୍କ ଭଳି ପ୍ରଶ୍ନ କରିଥିଲି; ସେ ଶୀତଳ-ଧ୍ୱଂସଲୀଳାର ଦିନ କେବେ ? ସେ ମୋର ନଗ୍ନ-ନିର୍ଜନ-କୋଳରେ ମୁହଁ ରଖି ଅସ୍ପଷ୍ଟ ଭାବରେ ଉତ୍ତରଦେଇଥିଲା, ଏଥର ସାଏଗନ୍‌ରୁ ଫେରିଆସେ; ଆମେ ସେ ଧ୍ୱଂସର ଉତ୍ସବ ପାଳନ କରିବା । କାଲି ମୋର ଛୁଟି ପୂରିଯାଉଛି... ମତେ ଭିଏତନାମ୍ ଫେରିଯିବାକୁ ହେବ ।

ସ୍ତବ୍ଧ ହୋଇଗଲା ବିଦେଶିନୀ । କଥା ବନ୍ଦ ରହିଲା । ଅନ୍ୟମନସ୍କ ଭାବରେ ସେ ମୋ ମୁହଁକୁ ଚାହ ରହିଲା । ତା' ମୁହଁରେ ଉତ୍‌କୀର୍ଣ୍ଣ ଅଲେଖା ଅକ୍ଷରକୁ ଜଣେ ପ୍ରବୀଣ ଭାଷାତତ୍ତ୍ୱବିତ୍ ଭଳି ପଢ଼ିସାରି ମୁଁ ପ୍ରଶ୍ନକଲି– ତା' ସହିତ ତମର ସେ ଶେଷ ଦେଖା । ତା'ପରେ ତମ ସହିତ ଆଉ ଦେଖା ହୋଇନି ?

: ନା– ସେ କିନ୍ତୁ ନିୟମିତ ଚିଠି ଲେଖୁଥିଲା । ନିଉଇୟର୍ସ ଗ୍ରୀଟିଂ ପଠାଉଥିଲା । ଭାରି ମିଠା ମିଠା ଅଶ୍ଳୀଳ ତା'ର ସବୁ ଚିଠି । ସାମରିକ ବିଭାଗ ଲୋକଙ୍କ ଭାଷା ଅଲଗା । ବେଶୀ ଫୋର୍ ଲେଟର୍ ୱାର୍ଡ ! କିନ୍ତୁ ତା' ହାତର ଲେଖା ବୋଲି ମୁଁ ତାକୁ ବାଇବେଲ୍ ଭଳି ପବିତ୍ର ମନେକରୁଥିଲି । ସେଇ ଫୋର୍ ଲେଟର ୱାର୍ଡସ୍ ଅନ୍ୟ ମୁହଁରୁ ଶୁଣିଲେ ମୁଁ ଅପମାନିତ ବୋଧ କରେ; କିନ୍ତୁ ସେଇ ଭାଷା ତା' ଚିଠିରେ କବିତା ହୋଇଯାଏ । ଗ୍ରୀଷ୍ମ ଋତୁରେ ତା'ର ଆସିବାର ଥିଲା । ମୁଁ ମୋର କୌମାର୍ଯ୍ୟର ଧ୍ୱଂସ ଉତ୍ସବ ପାଳନ କରିବା ପାଇଁ ନିଜକୁ ଫୁଲରେ ଫୁଲରେ ସଜାଉଥିଲି । ହଠାତ୍ ସମ୍ବାଦପତ୍ରରେ ବାହାରିଲା ଭିଏତ୍‌କଙ୍ଗ୍ ଗରିଲାମାନେ ମାର୍କିନ ଘାଟି ଉପରେ ଚଢ଼ାଉ ଆରମ୍ଭ କରିଛନ୍ତି । ସବୁ ସାମରିକ ଅଫିସରଙ୍କ ଖରା ଛୁଟି ବାତିଲ୍ କରି ଦିଆଯାଇଛି । ଏରୋପ୍ଲେନ୍‌ରେ ଭର୍ତ୍ତି ହୋଇ ଅଧିକ ଆମେରିକା ସୈନ୍ୟ ସାଏଗନ୍ ଯାଉଛନ୍ତି । ହଠାତ୍ ଭିଏତନାମ ଯୁଦ୍ଧ ବିରୁଦ୍ଧରେ ଆମେରିକାରେ ଜନମତ ଜାଗ୍ରତ ହୋଇଉଠିଲା । ଭିଏତନାରେ ମରିବା ପାଇଁ ଆମେରିକାର ସୈନ୍ୟମାନେ ଜନ୍ମ ହୋଇ ନଥିଲେ ବୋଲି ସ୍ଳୋଗାନ୍ ଦେଇ ବହୁ ଆମେରିକୀୟ ଜନନୀ ୱାଶିଂଟନ୍ ହ୍ୱାଇଟ୍ ହାଉସ୍ ଆଗରେ ସତ୍ୟାଗ୍ରହ ଆରମ୍ଭ କରିଦେଲେ । ମୁଁ ମଧ୍ୟ ସେହି ସତ୍ୟାଗ୍ରହରେ ଯୋଗଦେଇଥିଲି... କେବଳ ତା'ରି ପାଇଁ । କିନ୍ତୁ ଦିନେ ଭିଏତକଙ୍ଗମାନେ ଆମେରିକାର ସାମରିକ ଘାଟି ଧ୍ୱଂସ କରିଦେଲେ; କିନ୍ତୁ କଥା ଦେଇଯାଇଥିଲେ ମଧ୍ୟ ସେ ମୋର କୌମାର୍ଯ୍ୟର ମହାଦେଶକୁ ତା'ର ପୌରୁଷର ଡ଼ିନାମାଇଟ୍‌ରେ ଧ୍ୱଂସ କରିବାକୁ ଫେରିଲା ନାଇଁ... ।

ହିପ୍‌ପିଣୀ ଆଖିରେ ମୁକ୍ତା ଭଳି କେଇ ବିନ୍ଦୁ ଉଷ୍ମ ଅଶ୍ରୁ ଝଲସିଉଠିଲା ।

ମୁଁ ପଚାରିଲି – ତମର ସେ ପ୍ରେମିକର ନାମ କ'ଣ ?

ସେ ଦାର୍ଶନିକ ଉଦାସୀନତାରେ କଣ୍ଠସ୍ୱରକୁ ଆର୍ଦ୍ର କରି ଉତ୍ତରଦେଲା – ସେ ମୋ ପାଇଁ ଚିରଦିନ ଏକ ନାମହୀନ, ମୁଖହୀନ ମଣିଷ ହୋଇ ରହିଗଲା... ଏ ନେମ୍‌ଲେସ୍ ଫେସ୍‌ଲେସ୍ ମ୍ୟାନ୍ ! ମୁଁ ମୋର ନିଜ ନାମ ଭୁଲିଯାଇଛି, ତା'ର ନାମ ଅବା ମନେ ରଖି ପାରନ୍ତି କିପରି ?

ମୁଁ ମନ୍ତବ୍ୟ କଲି – ଆମେ ସମସ୍ତେ ନାମହୀନ, ମୁଖହୀନ ମଣିଷ । ଆମେ ନିଜେ ଆମର ସଠିକ ଠିକଣା ଜାଣୁନାହିଁ । ସେଥିପାଇଁ ତ ସେଇ ଠିକଣା ଖୋଜି ବାହାର କରିବା ପାଇଁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଘୂରିବୁଲୁଛୁ ।

ଦୁଇ ବାହୁରେ ସେ ମୋର ଗଳା ଛନ୍ଦି ଦେଇ ସେ ଅନୁନୟ କଲାଭଳି କହିଲା– କିନ୍ତୁ ତମେ ମତେ ଗୋଟାଏ ନାମ ଦିଅ ରାଇଟର ! ପ୍ଲିଜ୍...

ତମେ ତ ମୋ ପାଇଁ ଏକ ସର୍ବନାମ; ତମକୁ ମୁଁ କେଉଁ ନାମରେ ଡାକିବି ବିଦେଶିନୀ !

ମୋ ଅନ୍ତଃସ୍ଥଳରୁ ଉଚ୍ଚାରିତ ଏଇ ନାଟକୀୟ ସଂଳାପ ମୋ ତଣ୍ଟି ଆରପଟେ ଅଟକି ଗଲା । ହଠାତ୍ ତୁମୂଳ ହଟ୍ଟଗୋଳରେ ମୁଖରିତ ହୋଇଉଠିଲା ହିପ୍‌ପି–ପଲ୍ଲୀ ।

କିଏ କାହିଁକି ଏଭଳି ଚିତ୍କାର କରୁଛନ୍ତି ବୋଲି ଜାଣିବା ପାଇଁ ମୁଁ ପର୍ଣ୍ଣକୁଟୀର ଛାଡ଼ି ବାହାରକୁ ଚାଲିଆସିବାକୁ ଉଠିପଡୁଥିଲି ।

ବାଧାଦେଲା ହିପ୍‌ପିଣୀ ।

: ମତେ ଏକା ଛାଡ଼ି ଯାଆନ୍ତୁନାହିଁ । ମୁଁ ଆଜିକାଲି କୋଳାହଳ ସହ୍ୟ କରିପାରେନା । କୋଳାହଳ, ଚିତ୍କାର, ଆର୍ତ୍ତନାଦ ଶୁଣିଲେ ମୋର ମନେହୁଏ ନିଉୟର୍କର କୌଣସି ଶହେ ମହଲା କୋଠା ଘରେ ଯେମିତି ନିଆଁ ଲାଗିଯାଇଛି; ଦ୍ୟ ଟାଓୟାରିଂ ଇନ୍‌ଫାର୍‌ନୋ, ଫାୟାର ବ୍ରିଗେଡ୍‌ର ପଥରୋଧ କରି ରାସ୍ତାରେ ଦଳେ ପାଲେଷ୍ଟାଇନ୍ କମାଣ୍ଡୋ ବନ୍ଧୁକ ହାତରେ ଠିଆହୋଇଛନ୍ତି, ମୁହଁରେ ସେମାନଙ୍କର ବନ୍ଧାହୋଇଛି ଗୋଟାଏ ଲେଖାଁ କଳା ରଙ୍ଗର ରୁମାଲ୍ । ସେମାନଙ୍କ କ୍ରୁଦ୍ଧ ଆଖିର ଚାହାଣି ଯେମିତି କହିହେଉଛି, ଜଳିଯାଉ ସେଇ ବହୁତଳ ପ୍ରାସାଦ... ଐଶ୍ୱର୍ଯ୍ୟର ମିନାର୍ ... ଔଦ୍ଧତ୍ୟର ଟାୱାର !

ସେ ତା'ର ଦୁଇ ବାହୁରେ ମତେ ଏକପ୍ରକାର କୁଣ୍ଢାଇ ଧରି ଅଟକାଇଛି । ତା'ର ଦୁଇଟି ମାଂସଳ ପୀନ ବକ୍ଷୋଜର କୋମଳ ଉଷ୍ଣତା ମୋ ହାୱାଇନ୍‌ର ପ୍ରତିବନ୍ଧକ ଅତିକ୍ରମ କରି ପିଠିର ମାଂସପେଶୀରେ  ବିଦ୍ୟୁତ–ତରଙ୍ଗ ଭଳି ସଞ୍ଚରିଯାଉଛି । ତା'ର ଦ୍ରୁତ ହୃଦ୍‌ସ୍ପନ୍ଦନ ଆଉ ଖର ଶ୍ୱାସପ୍ରଶ୍ୱାସର ଗତିରୁ ମନେହେଉଛି ହିପ୍‌ପୀ–ପଲ୍ଲୀର ଗଣ୍ଡଗୋଳ ଆଉ ହୋ-ହଲ୍ଲାର ଶବ୍ଦ ତାକୁ ଖୁବ୍ ଉତ୍ତେଜିତ କରିଦେଇଛି ।

ସେଇ ଘରବାଲା ଗୋଆନିଜ୍ ଆସି ପହଞ୍ଚି ଯିବା ପରେ ମୁଁ ହିପ୍‌ପିଣୀର ବାହୁ–ବନ୍ଧନରୁ ମୁକ୍ତ ହୋଇ ପ୍ରଶ୍ନକଲି– କଅଣ ପାଇଁ ପାଟିତୁଣ୍ଡ, ଗଣ୍ଡଗୋଳ ଲାଗିଛି ?

ଲୋକଟି ଉତ୍ୟକ୍ତ ପାଟିତୁଣ୍ଡକୁ ଗୋଟାଏ ମୃଦୁ ହସରେ ବାତିଲ କରିଦେଇ କହିଲା– ସେ କିଛି ନୁହେଁ ସାହେବ ! ପ୍ରତିଦିନ ଏମିତି ହୁଏ । ସେ ସାହେବାଣୀକୁ ନେଇ ଡାକ୍ତର ସହର ବୁଲିଯାଏ । ଆଜି ବି ଆସିଥିଲା । ସାହେବାଣୀ ପ୍ରେଗ୍‌ନାଣ୍ଟ୍ । ଡାକ୍ତର କହୁଛି, ସେଥିପାଇଁ ସେ ଦାୟୀ ନୁହେଁ । ସବୁ ହିପ୍‌ପିମାନେ ରାଗିଯାଇ ପାଟିତୁଣ୍ଡ କରୁଛନ୍ତି । ଡ଼ାକ୍ତର ଚୁପ୍‌ଚାପ ଠିଆ ହୋଇଛି । କିଛି ସମୟ ଗଲେ ପକେଟରୁ ସେ ମରଫିନ୍, ଏଲ. ଏସ.ଡ଼ି. ଆଉ ହେରୋଇନ୍ ଶିଶି କାଢ଼ିବ । ଇଂଜେକସନ୍ ସିରିଞ୍ଜରେ ସମସ୍ତଙ୍କୁ ଫୋଡ଼ିବ । ସେମାନଙ୍କ ପାଟିତୁଣ୍ଡ ନିଶା ଘୋରରେ ଚୁପ୍‌ଚାପ୍ ହୋଇଯିବ ! ସେ ସାହେବାଣୀ ପୁଣି ବାହାରିଯିବ ଡାକ୍ତର ସାଙ୍ଗରେ ।

ମୁଁ କିଞ୍ଚିତ୍ ବିସ୍ମୟ, କିଞ୍ଚିତ କୌତୂହଳରେ ପଚାରିଲି– କେଉଁଠିକାର ଡାକ୍ତର ?

: ଫର୍ଣ୍ଣାଡିଜ୍ କ୍ଲିନିକ୍‌ର ଡାକ୍ତର । ଅସଲି ବ୍ୟବସାୟ ନିଶା ବଟିକା, ନିଶା ଇଞ୍ଜେକ୍‌ସନ ଚୋରାରେ ବିକ୍ରି କରିବା । ସେଇ ସୂତ୍ରରେ ଗୋଆର ହିପ୍‌ପିମାନଙ୍କ ସହିତ ସମ୍ପର୍କ । ଲୋକଟା

କିନ୍ତୁ ଭାରି ଶଠ । ହେରୋଇନ୍ ଶିଶି ଭିତରେ ଜବ ଆଉ ଚିନିଶିରା ମିଶାଏ । ଦୁଇଟା ଇଞ୍ଜେକ୍ସନ ନେଲେ ବି ନିଶା ଧରେନାଇଁ । ଅସଲି ମାଲ୍ ଚାହିଁଲେ ମତେ କହିବେ, ସାହେବ ! ଏକଦମ୍ ଖାଣ୍ଟି ଜିନିଷ । ଦାମ୍ ଟିକିଏ ଅଧିକା... ଫରେନ୍ ଇମ୍ପୋଟେଡ୍...

ଲୋକଟା ମତେ ଖାଣ୍ଟି ନିଶା ଇଞ୍ଜେକ୍ସନର ଲୋଭ ଦେଖାଇଲା । କିନ୍ତୁ ସେତେବେଳକୁ ମୋ ମନ ଭିତରେ ସାତ ଆରବ ସାଗରର ଢେଉ ମଥା ପିଟୁଛି ।

ଫର୍ଣ୍ଣାଡିଜ୍ କ୍ଲିନିକ୍‌ର ଡାକ୍ତର !

ନା, ମନର ସନ୍ଦେହ ମୋଚନ କରିବାକୁ ହେବ । ହିପ୍‌ପିଣୀକୁ ଅପେକ୍ଷା କରିବାକୁ କହି ପାଟିତୁଣ୍ଡ ଶୁଣାଯାଉଥିବା ହିପ୍‌ପିପଲ୍ଲୀ ଆଡ଼କୁ ମୁଁ ବାହାରିଗଲି ।

ମତେ କିନ୍ତୁ ବେଶୀ ଦୂର ଯିବାକୁ ପଡ଼ିଲାନାହିଁ ।

ମୋ ସାମ୍ନା ଦେଇ ମଟର ସାଇକେଲ୍ ପଛରେ ଜଣେ ସୁନ୍ଦରୀ ବିଦେଶିନୀକୁ ବସାଇ ଡାକ୍ତର ଚୌଧୁରୀ ବୁଲେଟ୍ ବେଗରେ ବାହାରିଗଲେ ।

ହିପ୍‌ପିପଲ୍ଲୀର ହୋହଲ୍ଲା ସେପର୍ଯ୍ୟନ୍ତ ସୁଦ୍ଧା ନୀରବ ହୋଇଯାଇନଥିଲା ।

ମୋ ଛାତିରୁ ଗୋଟାଏ ନିଆଁଝୁଲ ଖସିପଡ଼ିଲା ।

ତାହାହେଲେ ହେରୋଇନ୍‌ର ନିଶା ନୁହେଁ; ହିରୋଇନ୍‌ର ପ୍ରେମ ଡାକ୍ତର ଚୌଧୁରୀଙ୍କୁ ଚୁମ୍ବକ ଭଳି ଟାଣିନିଏ ଫର୍ଣ୍ଣାଡିଜ୍ କ୍ଲିନିକ୍‌କୁ !

ବିଚାରୀ ଲିପିକା !





ଟୁରିଷ୍ଟ ଲଜ୍‌ରେ ପାଦ ଦେବା ମାତ୍ରେ ମ୍ୟାନେଜର ମତେ ପ୍ରଥମେ ସମ୍ବାଦ ଦେଲେ, ଆପଣଙ୍କୁ ଜଣେ ଭଦ୍ରମହିଳା ଦୁଇଥର ଖୋଜି ଫେରିଛନ୍ତି । ଶେଷଥର ହତାଶ ହୋଇ ଫେରିଲାବେଳେ ଆପଣଙ୍କ ଉଦ୍ଦେଶ୍ୟରେ ଖଣ୍ଡେ ଚିଠି ଦେଇଯାଇଛନ୍ତି । ଏଇ ଚିଠି ।

ଜଣେ ଭଦ୍ରମହିଳା ମତେ ଦୁଇଥର କାଲି ଖୋଜି ଯାଇଛନ୍ତି ? ପାଂଜିମ୍ ସହରରେ ଲିପି ଭିନ୍ନ ଆଉ କେଉଁ ଭଦ୍ରମହିଳା ଅବା ମତେ ଖୋଜିପାରେ ?

ହଁ, ଲିପିକାର ଚିଠି ।

ସଂକ୍ଷିପ୍ତ ଲେଖା, ଦୁଇଥର ଖୋଜି ଫେରିଲି । କାଲି ସିଧା ଆମ କ୍ୱାର୍ଟରକୁ ଚାଲିଆସିବେ । ଲର୍ଡର ଜନ୍ମଦିନ ଉପଲକ୍ଷ୍ୟେ ଏକ ପିକ୍‌ନିକ୍‌ରେ ଯିବା । ଆପଣ ନଗଲେ ପିକ୍‌ନିକ ହେବ ନାହିଁ ବୋଲି ଲର୍ଡ଼ ଜିଦ୍ ଧରିଛି । ଏକା ଆସିବେ । —ଲିପି ।

ଏ ଚିଠିର ଶେଷ ବାକ୍ୟ ଉପରେ ମୋର ଦୃଷ୍ଟି କିଛି ସମୟ ସ୍ଥିର ହୋଇ ରହିଗଲା । ଏକା ଆସିବେ ବୋଲି ଲେଖିବାର ଅର୍ଥ କଣ ? ସେ କଅଣ ସନ୍ଦେହ କରୁଥିଲା ମୁଁ ସାଙ୍ଗରେ ହିପ୍‌ପିଣୀକୁ ନେଇ ପିକ୍‌ନିକ୍‌ରେ ଯିବି ?

ଜେଲସି ଦାଇ ନେମ୍ ଇଜ୍ ଉଇମାନ୍ ।

ତାହାହେଲେ ଲିପି ଜାଣିଯାଇଛି, ଗୋଆ ଭ୍ରମଣରେ ମୋର ସହଯାତ୍ରିଣୀ ହୋଇଛି ସେଇ ବିଦେଶିନୀ; ତାକୁଇ ନେଇ ମୁଁ ଗୋଆର ସମୁଦ୍ରତଟ, ଗୀର୍ଜା, ମନ୍ଦିର ଘୂରିବୁଲୁଛି ! କିନ୍ତୁ ସେ କଅଣ ଜାଣେ... ?

ନା, ସେକଥା ଥାଉ ।

ଜୋର୍ କରି ସେ ଦୁଶ୍ଚିନ୍ତାକୁ ମୁଁ ମନରୁ ନିର୍ବାସିତ କରି ରୁମ୍‌ର ଦରଜା ଖୋଲିଲି ! ହିପ୍‌ପିଣୀ ନଥିଲେ ବି ସାରା କୋଠାରି ଭିତରେ ତା'ର ସ୍ମୃତି ଚରସ୍‌ର ବାସ୍ନା ହୋଇ ଭାସୁଛି । ମୋ ଗୋଆ ଭ୍ରମଣ ତା'ର ସାନ୍ନିଧ, ସଖ୍ୟ ଫୁଲ ହୋଇ ସ୍ମୃତିର ସୂତାରେ ଗୁନ୍ଥା ହୋଇଯାଇଛି ।

ମୁଁ ତ ଗୋଆର ସୌଖୀନ ଟୁରିଷ୍ଟ୍; କିନ୍ତୁ ସେମାନଙ୍କ ପାଇଁ ଏହା ମୁକ୍ତିତୀର୍ଥ ! ଜନ୍ମଭୂମି ସେମାନଙ୍କ ପାଇଁ ଦୂର ପ୍ରବାସ ହୋଇଯାଇଛି; ବିଦେଶ ହୋଇଛି ସ୍ୱଦେଶ ! ସବୁ ହିପ୍‌ପି,

ହିପ୍‌ପିଣୀ ଯେ ଇଣ୍ଡିୟା କିମ୍ବା ନେପାଳକୁ ନିଜର ସ୍ୱଦେଶ ଭାବରେ ଗ୍ରହଣ କରିନିଅନ୍ତି ସେକଥା ନୁହେଁ । ଅନେକ ହିପ୍‌ପି ସିଜିନ୍ ବାର୍ଡ୍ ଭଳି କିଛି ଦିନ ପାଇଁ ଦଳ ଦଳ ହୋଇ ବୁଲିଆସନ୍ତି, କିଛି ଦିନ ନିଶାଟାଣି, ମୁକ୍ତ ଯୌନ ସମ୍ଭୋଗର ଉଦ୍ଦାମ ବିଳାସରେ ମାତି ସାରି, ଟଙ୍କା ଶେଷ ହୋଇଗଲେ ପୁଣି ସୁନାପିଲା ଭଳି ସ୍ୱଗୃହକୁ ଫେରିଯାଆନ୍ତି । କିନ୍ତୁ ମୋର ସହଯାତ୍ରିଣୀ ଭଳି ଅନେକ ବିଦେଶୀ, ବିଦେଶିନୀ ପ୍ରକୃତରେ ଇଣ୍ଡିୟାର ପ୍ରେମରେ ପଡ଼ିଯାଆନ୍ତି । ପାସପୋର୍ଟର ସମୟ ସୀମା ପାରହୋଇଗଲେ କିମ୍ବା ଟଙ୍କା ପଇସା ଶେଷ ହୋଇଗଲେ ମଧ୍ୟ କୌଣସି ପ୍ରକାରେ ସେମାନେ ଏ ଦେଶର ମାଟିରେ ଅଟକି ରହନ୍ତି । ସେମାନଙ୍କର ନିଜର କୌଣସି ସ୍ୱଦେଶ ନାହିଁ; କାରଣ ହୃଦୟ ସେମାନଙ୍କର ଚିର ପ୍ରବାସୀ !

ଐଶ୍ୱର୍ଯ୍ୟ, ପ୍ରତିପତ୍ତି ମଣିଷଠାରୁ ଈଶ୍ୱରଙ୍କୁ ପର କରିଦେଇଛି । ଦରିଦ୍ର ପାଇଁ ଈଶ୍ୱର ହିଁ ଭରସା । ସେଥିପାଇଁ ଭାରତବର୍ଷର ଦରିଦ୍ରମାନଙ୍କ ସହିତ ଦରିଦ୍ର ହୋଇ ରହିଲେ ଈଶ୍ୱରଙ୍କ ସାନ୍ନିଧ ମିଳିପାରେ, ମୁକ୍ତି ସହଜ-ଲଭ୍ୟ ହୋଇପାରେ, ଏମିତି ଏକ ଅସ୍ପଷ୍ଟ ଧାରଣା ମଧ୍ୟ ସେମାନଙ୍କ ମଧ୍ୟରୁ କାହାରି କାହାରି ମନରେ ଘନୀଭୂତ ହୋଇଛି ।

କିନ୍ତୁ ଏଇ ସବୁ ମୁକ୍ତିକାମୀ ହିପ୍‌ପିମାନଙ୍କ ସହିତ ମୋର ନାମହୀନ ସହଯାତ୍ରିଣୀର କୌଣସି ହିସାବ ମିଳେନାଇଁ । ସେ ହିପ୍‌ପି ହୋଇ ସୁଦ୍ଧା ଯେମିତି ଆତ୍ମାର ମୁକ୍ତି ପାଇଁ ନୁହେଁ, ଆତ୍ମାନ୍ୱେଷଣରେ ହିଁ ଘୂରିବୁଲୁଛି ! ମରଲିନ୍ ମନ୍‌ରୋଙ୍କ ଟ୍ରାଜିକ୍ ଡେଥ୍, ଭିଏତନାମ ଯୁଦ୍ଧ କ୍ଷେତ୍ରରେ ତା'ର କେଉଁ ସୈନିକ-ପ୍ରେମିକର ନିରୁଦ୍ଦେଶ ପେଣ୍ଟାଗନ୍‌ର ପ୍ରଳୟଙ୍କରୀ ସାମରିକ ଅସ୍ତ୍ରସଜ୍ଜା, ହ୍ୱାଇଟ୍ ହାଉସ୍‌ର ଆତ୍ମ ପ୍ରବଞ୍ଚନାମୂଳକ ରାଜନୀତି, ନିଉୟର୍କ ସହର ଟାଇମ୍‌ସ୍କୋୟାରର ସେକ୍‌ସ ମାର୍କେଟ ତା'ର ଆତ୍ମ-ବିଶ୍ୱାସର ମୂଳ ଚେରକୁ ଦୋହଲାଇଦେଇଛି । ନିଅନ୍ ଆଲୁଅର ଔଜ୍ଜ୍ୱଲ୍ୟ ପଛରେ ସେ ଦେଖିବାକୁ ପାଇଛି ରାତ୍ରିର ରାଶି ରାଶି ଅନ୍ଧକାର । ମନରେ ତା'ର ସେଇ ଆଦିମ ମୌଳିକ ଜିଜ୍ଞାସା, କାହିଁକି ଜନ୍ମ, କାହିଁକି ନିର୍ଯ୍ୟାତନା ? ଏ ପୃଥିବୀରେ ଜନ୍ମହେବାର ଋଣ ଶୁଝିବା ପାଇଁ କଅଣ ପ୍ରତି ମୁହୂର୍ତ୍ତରେ ପାପର ବଣିଜରେ ଲିପ୍ତ ହେବା ଦରକାର ? ଏଥିରୁ ମୁକ୍ତି ପାଇବା ପାଇଁ କଅଣ ଅନ୍ୟ କିଛି ଉପାୟ ନାହିଁ ?

ଦିନେ ଏଇ ଆତ୍ମ ଜିଜ୍ଞାସା ରାଜପୁତ୍ର ଗୌତମକୁ ରାଜପୋଷାକ ଫିଙ୍ଗିଦେଇ ସନ୍ନ୍ୟାସୀ ହେବାକୁ ବାଧ୍ୟକରିଥିଲା । ଆଜି ମୋର ସେଇ ନାମହୀନା ସହଯାତ୍ରିଣୀ ସେଇ ଜିଜ୍ଞାସା- ବ୍ୟାକୁଳ ହୃଦୟର ଉତ୍ତର ଖୋଜି ପାଇବା ପାଇଁ ଲସ୍‌ଏଂଜେଲ୍‌ସର ସଞ୍ଚିତ-ସଂସାର ଛାଡ଼ି ଆଜି ଗୋଆର ସମୁଦ୍ରତୀରରେ ଦୀନା ହୀନା ଭାବରେ ଘୂରିବୁଲୁଛି ।

କେଉଁଦିନ ଶେଷ ହେବ ତା'ର ଏଇ ପ୍ରବ୍ରଜ୍ୟାର ଦିନ ?

ପାଂଜିମ୍ ଟୁରିଷ୍ଟ ଲଜ୍‌ରେ ସେଇ ହିପ୍‌ପିଣୀର ଝାପ୍‌ସା ସ୍ମୃତିରେ ଗୋଟିଏ ରାତି ମୋର ଭୋର୍ ହୋଇଗଲା ।

ତା ଆରଦିନ ଲିପି !

: ଆପଣଙ୍କୁ ଖୋଜି ଖୋଜି ମୁଁ କ୍ଳାନ୍ତ ହୋଇଗଲିଣି । ଏ ଦୁଇଦିନ କୁଆଡ଼େ ଥିଲେ ? ଶୁଣିଲି ସେ ହିପ୍‌ପିଣୀ ସାଙ୍ଗରେ ଟୁରିଷ୍ଟ ମ୍ୟାପର ନିର୍ଦ୍ଧାରିତ-ପଥ ଛାଡ଼ି ଅପଥରେ କୁଆଡ଼େ ଆପଣ ଘୂରିବୁଲୁଥିଲେ ?—ଲିପି କଣ୍ଠସ୍ୱରର ଅନୁଯୋଗ ଆଉ ଅଜ୍ଞାତ-ବିସ୍ମୟର ସମନ୍ୱୟ ।

ମୁଁ କିଛି ଉତ୍ତର ଦେଲିନାହିଁ । କେବଳ ହସିଲି ।

: ହସୁଛନ୍ତି ? ମତେ କିନ୍ତୁ କାନ୍ଦମାଡୁଛି । ଏ ଦୁଇଦିନ ଆପଣଙ୍କର କୌଣସି ସମ୍ବାଦ ନ ପାଇଁ ମୁଁ ଯେ କି ଦୁଶ୍ଚିନ୍ତାରେ ପଡ଼ିଛି, ଆପଣ ବୁଝିପାରିବେ ନାହିଁ । କଣ୍ଡକ୍‌ଟିଂ ଟୁର୍ ଆୟୋଜନ କରୁଥିବା ସବୁ ବସ୍ କଣ୍ଡକ୍ଟର୍‌ମାନଙ୍କୁ କଣ୍ଟାକ୍ଟ କରି କିଛି ସଂଧାନ ପାଇଲି ନାହିଁ ଟ୍ୟୁରିଷ୍ଟ ବ୍ୟୁରର । ମ୍ୟାନେଜର ମଧ୍ୟ କିଛି ଖବର ଦେଇ ପାରିଲେ ନାହିଁ । ଚାରିହଜାର ସ୍କୋୟାର କିଲୋମିଟରର ଛୋଟ ରାଜ୍ୟ ଗୋଆ । ତା ଭିତରେ କୁଆଡ଼େ ଯେ ଆପଣ ହଜିଗଲେ ! —ଲିପି ମୋ ପାଇଁ ସତରେ ଖୁବ୍ ବ୍ୟସ୍ତ ହୋଇପଡ଼ିଥିବା ଭଳି ମୁଖଭଙ୍ଗୀ କରି କହିଲା ।

ମୁଁ ତାକୁ ପ୍ରଶ୍ନ କଲି—ତମେ କଅଣ କିଛି ଅଘଟଣ ଘଟିଗଲା ଭଳି ଅମଙ୍ଗଳ ଆଶଙ୍କା କରୁଥିଲ ?

ମତେ ମୃଦୁ ଧମକ ଦେଇ ସେ ଉତ୍ତର ଦେଲା—ନିଜର ଅମଙ୍ଗଳ ସମ୍ପର୍କରେ ପରିହାସ କରିବାକୁ ମଜା ଲାଗୁଛି । ନା ? କିନ୍ତୁ ସେଭଳି କିଛି ଭୟ ଯଦି ମନରେ ମୋର ସୃଷ୍ଟି ହୋଇଥାଏ ତାକୁ ଅମୂଳକ ବୋଲି କହି କଅଣ ଆପଣ ଉଡ଼ାଇ ଦେଇପାରିବେ ? ପ୍ରତି ମୁହୂର୍ତ୍ତରେ ଏଠାରେ ରାସ୍ତାରେ ଆକ୍‌ସିଡେଣ୍ଟ । ଚୋରୀ, ଡକାଏତି, ଖୁନ୍ । ଏ ସବୁର ପରିମାଣ ଏତେ ବେଶୀ ହୋଇଗଲାଣି ଯେ ଖବରକାଗଜ ମଧ୍ୟ ଆଉ ଏସବୁ ରିପୋର୍ଟ ଛାପନ୍ତି ନାହିଁ । କାଲି ରାତିରେ ଦୁଶ୍ଚିନ୍ତାରେ ସତରେ ମୋର ଭଲ ନିଦ ହୋଇନି ।

ଲିପିର କଥା ଶୁଣି ମୁଁ ମନେ ମନେ ହସିଲି ।

କାଲି ରାତିରେ ମୁଁ ଯେତେବେଳେ ସେ ହିପ୍‌ପିଣୀ କଥା ଭାବି ବିହ୍ୱଳିତ ଅବସ୍ଥାରେ ଥିଲି, ଲିପି ମୋ କଥା ଭାବି ଦୁଶ୍ଚିନ୍ତାରେ ରାତ୍ରିଯାପନ କରୁଥିଲା !

ଲିପିକୁ ଖୁସି କରିବାକୁ କହିଲି—ଆଜି ବି ଏ ମଧ-ଯୌବନରେ କୌଣସି ସୁନ୍ଦରୀ ନାରୀ ମୋ କଥା ମନେପକାଇ ଦୁଶ୍ଚିନ୍ତାରେ ହେଲେ ସୁଦ୍ଧା ରାତ୍ରିରେ ଶୋଇପାରୁନି, ଏକଥା ଭାବିଲେ ମନ ଏକ ସ୍ୱର୍ଗୀୟ ତୃପ୍ତିରେ ଭରିଯାଏ । ମନେହୁଏ, ଏ ନିଷ୍ଠୁର ପୃଥିବୀରୁ ମୋର ଆଉ କିଛି ପାଇବାର ନାହିଁ । ମୁଁ ସବୁ କିଛି ପାଇଯାଇଛି ।

ମୋର କପଟ-ପ୍ରଶଂସା ଲିପି ବୋଧହୁଏ ବୁଝିପାରିଲା ।

ମୋ ପିଠିକୁ ପୁଳାଏ ଚିମୁଟିଦେଇ ସେ କହିଲା—ଥାଉ, ଥାଉ । ଆଉ କବିତ୍ୱ କରିବା ଦରକାର ନାହିଁ । କାଲି ତ ସେ ହିପ୍‌ପିଣୀ ସାଙ୍ଗରେ କେଉଁ ସମୁଦ୍ରତଟରେ ବସି ମଜା କରୁଥିଲେ । ମୋ କଥା ମନେଥିଲା ! ମୁଁ ଆପଣଙ୍କୁ ଭଲ କରି ଚିହ୍ନିଛି । ଆପଣ ମତେ ଆଦୌ ସହ୍ୟ କରି ପାରନ୍ତି ନାହିଁ । ସେକଥା ପ୍ରକାଶ କରିବାରେ ଆପଣଙ୍କର ମୁଖଲଜ୍ଜା ମଧ୍ୟ ନାହିଁ । ମୁଁ କଅଣ ଭୁଲିଗଲିଣି, ଆପଣ ଭାଇଙ୍କୁ ସଫା ମନା କରିଦେଇଥିଲେ ନା ।

ସେଇ ପୁରୁଣା ମିଛ କଥାର ପୁନରାବୃତ୍ତି କଲା ଲିପିକା ।

ମୁଁ ମଧ୍ୟ ତାକୁ ଚିଡ଼ାଇବା ପାଇଁ କହିଲି—ସବୁକଥା ଜାଣି ସୁଦ୍ଧା ତମେ ଅକାରଣରେ ପ୍ରତିଶୋଧ ନେବା ପାଇଁ ମୋ ଉପରେ ଦୟା କର କାହିଁକି ? ତମେ ଭଲ କରି ଜାଣ ଯେ ମୁଁ କେବେହେଲେ ଗୋଆର ଜନଗହଳିରେ ହଜିଗଲା ଭଳି ପୁରୁଷ ନୁହେଁ । ଅକ୍ଷୟ ତୂଣୀରରୁ ନିକ୍ଷିପ୍ତ ତୀର ଭଳି ଯୁଆଡ଼େ ବୁଲୁଥିଲେ ବି ଠିକ୍ ସମୟରେ ଟୁରିଷ୍ଟ ଲଜ୍‌କୁ ଫେରିଆସିବି । ତଥାପି କୌଣସି ଦୁର୍ଘଟଣାର ଆବର୍ତ୍ତରେ ପଡ଼ିଯାଇଥିବି ବୋଲି ଆଶଙ୍କା କରି ରାତ୍ରିର ସୁନିଦ୍ରା ନଷ୍ଟ କଲି କାହିଁକି ?

ଲିପି ପ୍ରଥମେ କିଛି କଥା କହିଲା ନାହିଁ । କିପରି ଏକ ଅନ୍ତର୍ଭେଦି ଚାହାଣିରେ ମତେ କିଛି ସମୟ ଚାହିଁରହିଲା ।

ତା'ପରେ ଭାବିଚିନ୍ତି ଉତ୍ତରଦେଲା—ଏସବୁ ପ୍ରଶ୍ନର ସଠିକ୍ ଉତ୍ତର ଦେଇ ହୁଏନାଇଁ । ସକଳ ସତର୍କତା ସତ୍ତ୍ୱେ ଦୁର୍ଘଟଣା ଘଟେ । କିଛି କାରଣ ନଥାଇ ମଧ୍ୟ ମନ ଖରାପ ହୁଏ । ଆଉ ଏ ଗୋଆ ରାଜ୍ୟରେ ମୋ ଛଡ଼ା ଆପଣଙ୍କର ଆପଣାର ଲୋକ କିଏ ଅଛି ? ଆପଣଙ୍କୁ ଟୁରିଷ୍ଟ ଲଜ୍‌କୁ ପଠାଇବା ମୋର ପ୍ରଥମ ଭୁଲ । ଜୋର୍ କରିଥିଲେ ଆପଣ ହୁଏତ ଆମ କ୍ୱାର୍ଟରରେ ରହି ଯାଇଥାଆନ୍ତେ, ତା ଛଡ଼ା ସେଇ ହିପ୍‌ପିଣୀ...

: ହିପ୍‌ପିଣୀକୁ ତମର ଭାରି ଭୟ । ନା ?

: ହଁ, ସେଇ ଝିଅଟାର ଆଖିରେ ମଧୁମାସ, ତା'ର ଓଠରେ ସର୍ବନାଶର ହସ । ଆପଣ ଜାଣନ୍ତି ନାଇଁ, ବସ୍‌ରେ ଯେତେବେଳେ ଆପଣ ସିଟ୍‌କୁ ଆଉଜି ଶୋଇଯାଇଥିଲେ, ପବନରେ ଆପଣଙ୍କ ମୁଣ୍ଡର କେଶ ମୁହଁ ଉପରକୁ ଝୁଙ୍କିପଡ଼ିଥିଲା; ମୁଁ ସେଇ ଦୁଷ୍ଟ କେଶଗୁଡ଼ାକୁ ମଧ୍ୟରାତ୍ରିରେ ସଜାଡ଼ି ଦେଉଥିଲାବେଳେ ସେଇ ବିଦେଶିନୀ ପଛ ଆଡ଼କୁ ମୁହଁ ବୁଲାଇ ମତେ ଏଭଳି ଏକ ଦୃଷ୍ଟିରେ ଚାହିଁଲା.... ! ସେ ଆପଣଙ୍କର କିଏ ? ସେ କାହିଁକି ମତେ ଏମିତି ଚାହିଁବ ?

ଲିପିର କଥାରେ ଉତ୍ତେଜନାର ଆଗ୍ନେୟ ଉତ୍ତାପ !

ମୁଁ ତାକୁ ସାନ୍ତ୍ୱନା ଦେଇ ଶାନ୍ତ କରିବାକୁ କହିଲି—ନା, ସେ ମୋର କେହି ନୁହେଁ, ସେ ଏକ ଅନ୍ୟ ଗ୍ରହର ଜୀବ । କକ୍ଷଚ୍ୟୁତ ନକ୍ଷତ୍ର ଭଳି ଅନ୍ୟ ଏକ ଗ୍ରହମଣ୍ଡଳରେ ଘୂରିବୁଲୁଛି । ତା'ର ଆଖିରେ ଚୈତ୍ରମାସ କିମ୍ବା ନିଃଶ୍ୱାସରେ ଫୁଲର ସୁବାସ ନାହିଁ । ଲିପି ! ନିଜର ଠିକଣା ହଜାଇଦେଇଥିବା କୌଣସି ନାରୀ ଅନ୍ୟ କୌଣସି ପୁରୁଷର ମନର ଠିକଣା ପଢ଼ିପାରେ ନାଇଁ । ସେ ଯଦି ଭୁଲରେ ତା'ର ହୃଦୟର ପ୍ରତିଲିପିକୁ ମୋ ପାଖକୁ ପଠାଇବା ପାଇଁ ଚେଷ୍ଟା କରିଛି; ଭୁଲ ଠିକଣାରେ ପଠାହୋଇଥିବା ଯୋଗୁ ସେ ପତ୍ରଲିପି ମୋ ପାଖରେ ପହଞ୍ଚି ନାଇଁ । ତମେ ତାକୁ ଭୁଲ ବୁଝନାଇଁ ।

ମୋ ଭାବନାର ସାନ୍ଧ୍ୟଭାଷା ଲିପିକା ହୁଏତ ପ୍ରଥମେ ବୁଝିପାରିଲାନାହିଁ । ଏକଦା ତାର ମନସ୍ତତ୍ତ୍ୱରେ ଅନର୍ସ ଥିଲା । ମୁହଁ ଦେଖି ମନର ଚେହେରା ସେ କିଛି ପରିମାଣରେ ବୁଝିପାରେ । କିନ୍ତୁ ଭାବନାର ଭାଷାତତ୍ତ୍ୱ ତାକୁ ଜଣାନାଇଁ । ତେଣୁ ହିପ୍‌ପିଣୀ ସମ୍ପର୍କରେ ଠିକ୍ ମୁଁ କଅଣ କହିବାକୁ ଯାଉଛି, ସେ ଧରିପାରିଲା ନାହିଁ ।

ମତେ ନିମ୍ନସ୍ୱରରେ କହିଲା—ଆଜିକାଲି କେହି କାହାର ମନର ଠିକଣା ଜାଣନ୍ତି ନାହିଁ । ସେଥିପାଇଁ ସମ୍ପର୍କର ସୂତ୍ର ସବୁ ଅବେଳରେ ଛିଡ଼ିଯାଏ । ଯେଉଁଦିନ ଭାଇ ମୋ ସହିତ ବିବାହ ପ୍ରସ୍ତାବ ନେଇ ଆପଣଙ୍କ ପାଖକୁ ଯାଇଥିଲେ, ସେଦିନ କଅଣ ମୋ ମନର ଠିକଣା ଜାଣିଥିଲେ ? ଜାଣିଥିଲେ ହୁଏତ ଚଟ୍‌କରି ମନା କରି ଦେଇନଥାନ୍ତେ । ମୁଁ ମଧ୍ୟ ସେଦିନ ମୋ ମନକୁ ନିଜେ ଭଲ କରି ବୁଝି ପାରିନଥିଲି । ଆପଣ ମନାକରିଦେଲେ ମୁଁ ଯେ ଏଭଳି ଆହତ ହେବି ; ଆତ୍ମହତ୍ୟା କରିବାକୁ ମୋର ଇଚ୍ଛା ହେବ; ଏକଥା ମୁଁ ଆଗରୁ କେବେ କଳ୍ପନା କରି ନଥିଲି । ଆଜିକାଲି ସେଭଳି କିଛି ହୁଏନା । ଭାବିଥିଲି, ମୋର ବିବାହ ପରେ ଆପଣଙ୍କ ସହ ଦେଖାହେଲେ ମୁଁ ଖୁବ୍ ରାଗିବି, ଆପଣଙ୍କୁ କଥା କହିବି ନାହିଁ । ମତେ ଯିଏ ବାହା ହେବ ନାହିଁ ବୋଲି ଭାଇର ମୁହଁ ଉପରେ ରୋକ୍‌ଠୋକ୍ ମନା କରି ଦେଇ ଅପମାନିତ କରିଛି, ତାକୁ ମୁଁ ଜୀବନରେ କେବେହେଲେ କଥା କହିବି ନାହିଁ । କିନ୍ତୁ ମୋ ମନର ସଂକଳ୍ପ କଅଣ ମୁଁ ରଖିପାରିଲି ? ଆପଣଙ୍କୁ ଭାଇର ବସାରେ ଏତେ ବର୍ଷପରେ ଦେଖିବା ମାତ୍ରେ ମନର ସବୁ ରାଗ ଜଳ ହୋଇଗଲା । ଆପଣ ଟିକିଏ ହେଲେ ବଦଳିନାହାନ୍ତି । ଆପଣଙ୍କର ବୟସ ବଢ଼ିଛି । ଲେଖକ ଭାବରେ ଖ୍ୟାତି ବ୍ୟାପିଛି; କିନ୍ତୁ ଆପଣ ଆଗଭଳି ସରଳ, ସ୍ନେହୀ, ପ୍ରଗଲ୍‌ଭ । ସଂସାରର ଜଟିଳତା, ସମୟର କୁଟିଳତା ଆପଣଙ୍କୁ ଟିକିଏ ହେଲେ ବଦଳାଇ ପାରିନାହିଁ । କି ଆଶ୍ଚର୍ଯ୍ୟ !

ମୁଁ ଅନୁନୟ କଲାଭଳି କହିଲି—ଲିପି ! ବିଶ୍ୱାସ କର, ପ୍ରଶାନ୍ତ କୌଣସି ଦିନ ତମ ସହିତ ମୋର ବିବାହ ପ୍ରସ୍ତାବ ମୋ ଆଗରେ ଉଠାଇନାହିଁ । ସେ ଯଦି ସେଭଳି ମିଥ୍ୟା କଥା କହି ତମକୁ ଅପମାନିତ କରିଥାଏ, ସେଥିରେ ମୋର ତିଳେ ହେଲେ ଅପରାଧ ନାହିଁ ।

: ଭାଇ ଜାଣି ଜାଣି ବୋଉକୁ ମିଛ କହିଥିଲା ? ନା, ଆଜି ବି ସେ କଥା ମୁଁ ବିଶ୍ୱାସ କରି ପାରୁନାହିଁ । ହୁଏତ ଆପଣ ଯାହା କହୁଛନ୍ତି ଠିକ୍ । ଜଣ ଜଣକର ମନର ଲଫାପାରେ ଠିକଣା ଲେଖା ହୋଇ ନଥାଏ । ଭାଇ ବୋଧହୁଏ ସେମିତି ଜଣେ ମଣିଷ । ତାକୁ ଠିକ୍ ଭାବରେ ହୁଏତ ମୁଁ ବୁଝିପାରି ନାହିଁ । ସେ ହୁଏତ ଡାକ୍ତର ଚୌଧୁରୀଙ୍କ ସହିତ ମତେ ବିବାହ ଦେବ ବୋଲି ମନରେ ଆଗରୁ ସ୍ଥିର କରି ରଖିଥିଲା । ମୁଁ ବୋଧହୁଏ ଆପଣଙ୍କୁ କହିନି, ମୀନାଭାଉଜ ଡାକ୍ତର ଚୌଧୁରୀଙ୍କର ଦୂରସମ୍ପର୍କୀୟା ଭଉଣୀ । ପିଉସୀ ଝିଅ ବା ସେମିତି କିଛି ହେବେ । ଡାକ୍ତର ଚୌଧୁରୀଙ୍କ ସହିତ ପ୍ରସ୍ତାବଟା ସେ ହୁଏତ ଭାଇଙ୍କ କାନରେ ପକାଇଥିଲେ । ଭାଇ ଆଉ ମୀନାଭାଉଜଙ୍କର ପ୍ରେମ ଅନେକ ଦିନର ଘଟଣା...

ସବୁ ଝାପ୍‌ସା, ସବୁ ଅସ୍ପଷ୍ଟ । ଗୋଟାଏ ଘଟଣାକୁ ଯୁକ୍ତିର ଭିଟାମାଟିରେ ଠିଆକରିବା ପାଇଁ ଲିପି ଛିଣ୍ଡିଯାଇଥିବା ଅନେକ ଗୁଡ଼ାଏ ସୂତ୍ରକୁ ଏକତ୍ର ଗଣ୍ଠି ପକାଇବାକୁ ଚେଷ୍ଟାକଲା ।

ତା'ପରେ ହଠାତ୍ ପ୍ରଶ୍ନ କଲା—ଆଚ୍ଛା, ଯଦି ଭାଇ ମୋ ସହିତ ବିବାହ ପ୍ରସ୍ତାବ ନେଇ ଯାଇଥାଆନ୍ତେ, ଆପଣ ହଁ କରିଥାଆନ୍ତେ ?

: ଏତେଦିନ ପରେ ସେ ପ୍ରଶ୍ନର ଉତ୍ତର ଶୁଣି ଲାଭ କ'ଣ ?

: ନା, ନା, ସେ ପ୍ରଶ୍ନର ଉତ୍ତର ଶୁଣିବା ପାଇଁ ମୋର ଖୁବ୍ ଆଗ୍ରହ । କହନ୍ତୁନା— । —ସେ ପାଦ କଚାଡ଼ି ଛୋଟ କିଶୋରୀ ଝିଅଟି ଭଳି ଉତ୍ତର ଶୁଣିବା ପାଇଁ ଜିଦ୍ କଲା ।

ମୁଁ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଗଲି ।

● ଠିକ୍ ସେହି ସମୟରେ ଜଣେ ଖାକି ପୋଷାକ ପିନ୍ଧା ସିପାହି ସାଙ୍ଗରେ ଲର୍ଡ ଆସି ପହଞ୍ଚି ପାଟିକଲା—ଅଙ୍କଲ୍ ! ତୁମ ପାଇଁ ଟଫି ଆଣିଛି । ମୋର ହାପି ବାର୍ଥ ଡେ । ଉଇସ୍ ମି...

ମୁଁ ତା'ର ଶୁଭ ଜନ୍ମଦିନ ପାଇଁ ଅନେକ... ଅନେକ ଶୁଭକାମନା ଜଣାଇ ତାକୁ ଛାତି ଉପରକୁ ଟେକିନେଲି ।

ସେ କହିଲା—ଜିପ୍ ରେଡି । ବାହାର, ପିକ୍‌ନିକ୍ ଯିବା । ପିଲାର୍ ଉପରେ ପିକ୍‌ନିକ୍ । ତମେ ପିଲାର୍ ଦେଖିଛ ?

ମୁଁ ମୁଣ୍ଡ ହଲାଇ ମନାକଲି । ପଚାରିଲି—ଡାଡି କାହାନ୍ତି ?

: ଡାଡି ଯାଇଛନ୍ତି ବାଙ୍ଗାଲୋର୍ । ତମେ ଆଜି ଜିପ୍ ଡ୍ରାଇଭ୍ କରିବ...ଆଚ୍ଛା ଅଙ୍କଲ୍ ! ମତେ ଟିକିଏ ଡ୍ରାଇଭିଂ ଶିଖାଇଦେବ ନା ?

ମୁଁ ହଁ ଭରି ତା'ର ଦୁଇ ଗାଲରେ ଚୁମାଦେଲି ।





ମଣିଷ ଯାହା ଚାହିଁ ସୁଦ୍ଧା ନପାଏ, ତା ପାଇଁ ଜୀବନ ସାରା ସେ ଝୁରିହେଉଥାଏ । ସାମାଜିକତା ଓ ଲୌକିକତାର ଆବରଣ ତଳେ ସେ ଝୁରିହେବାର ଦୃଶ୍ୟ ସବୁବେଳେ ଦେଖା ଯାଉ ନଥିଲେ ମଧ୍ୟ ଆଢୁଆଳର ସୁବିଧା ପାଇଲେ ତାହା ଖୁବ୍ ଉଗ୍ର ରୂପରେ ପ୍ରକଟିତ ହୁଏ ।

ପ୍ରଥମ ଯୌବନରେ କେଉଁ ଦୁର୍ବଳ ମୁହୂର୍ତ୍ତରେ ସେ ମତେ ବାହାହେଲେ ସୁଖୀ ହେବ ବୋଲି ଦିନେ ହୁଏତ ସ୍ୱପ୍ନ ଦେଖିଥିଲା । ସେ ସ୍ୱପ୍ନର କଢ଼ି ପାଖୁଡ଼ା ମେଲାଇ ଫୁଟିବା ଆଗରୁ ମୋର ନାସ୍ତିମୂଳକ ଏକ ଭୁଲ ସମ୍ବାଦରେ ତା'ର ସେ ସ୍ୱପ୍ନ ଭାଙ୍ଗିଯାଇଥିଲା । କିନ୍ତୁ ସେଇ ସ୍ୱପ୍ନ କଥା କୌଣସି ଦିନ ଭୁଲିପାରିନାହିଁ ଲିପିକା । ମତେ ଏକାନ୍ତରେ ପାଇବା ପରେ ଶୁଖି ମଉଳିଯାଇଥିବା ସ୍ୱପ୍ନ-କଳିକା ପୁଣି ଥରେ ତା ମନରେ ସତେଜ ହୋଇ ଉଠିଛି । ପ୍ରଶାନ୍ତ ମୋ ପାଖରେ ସେ ପ୍ରସ୍ତାବ ରଖିଥିଲେ ମୁଁ ହଁ କରିଥାଆନ୍ତି କି ନାହିଁ ସେ କଥା ଜାଣିବା ପାଇଁ ଗୋଟିଏ ପୁତ୍ରର ଜନନୀ ହେଲାପରେ ମଧ୍ୟ ଲିପି ଆଜି ବ୍ୟାକୁଳ ହୋଇଉଠିଛି ।

କିନ୍ତୁ ମୁଁ ତା'ର ପ୍ରଶ୍ନର କଅଣ ଅବା ଉତ୍ତର ଦେଇପାରେ ?

ଲିପିକୁ ବିବାହ କରିବାର ଇଚ୍ଛା କୌଣସି ଦିନ ମୋ ମନକୁ ସ୍ୱପ୍ନର ଇନ୍ଦ୍ରଧନୁର ରଙ୍ଗରେ ରଙ୍ଗିନ୍ କରିନାହିଁ । ତା'ର ସ୍ୱାମୀର ଭୂମିକାରେ ରଖି ମୁଁ କୌଣସି ଦିନ କିଛି କଳ୍ପନା କରିନାହିଁ । ଆଜି ଭାବିଚିନ୍ତି, ମନକୁ ଫାନ୍ଦି ଯେ କୌଣସି ଗୋଟାଏ ଉତ୍ତର ଦେଲେ ମଧ୍ୟ ସେଥିରେ କୌଣସି ସତ୍ୟତା ରହିବ ନାହିଁ । ଆଜି ମଧ୍ୟ ତାକୁ ନିଜର ପତ୍ନୀର ଆସନରେ ରଖି କିଛି କଳ୍ପନା କରିବା ମୋ ପକ୍ଷରେ କୌଣସି ଆନନ୍ଦର କଥା ନୁହେଁ ।

ତେଣୁ ସେ ପ୍ରସଙ୍ଗ ମୁଁ ଏଡ଼ାଇ ଯିବାକୁ ଚେଷ୍ଟାକଲି । ଜିପ୍‌ରେ ବସିଥିବାବେଳେ ମୁଁ ଲର୍ଡକୁ ନେଇ ହସ କୌତୁକରେ ମାତି ରହିଲି ।

ପାଂଜିମ୍‌ଠାରୁ ବେଶ୍ ଅନେକ ଦୂରରେ ପିଲାର୍ । ପାହାଡ଼ ଉପରେ ଅବସ୍ଥିତ ବୋଲି ଏଠାରୁ ଜୁଆରୀ ନଈ ଆଉ ମାରଗାଓଁ ବନ୍ଦରର ଦୃଶ୍ୟ ବେଶ୍ ସୁନ୍ଦର ଦେଖାଯାଏ ।

ଜିପ୍‌ରୁ ସତରଞ୍ଜି ଆଉ ଅନେକ ପ୍ରସ୍ତୁତ ଖାଦ୍ୟର ଡବା ବାହାର କରି ଆଣିଲା ସିପାହି । ଡାକ୍ତର ଚୌଧୁରୀଙ୍କ ଅନୁପସ୍ଥିତିରେ ଏଇ ସିପାହି ଆସି ଘରର ଛୋଟ ଛୋଟ କାମ ଧନ୍ଦା କରିଦିଏ । ଲର୍ଡକୁ ସ୍କୁଲକୁ ନିଏ । ଆଜି ସେଥିପାଇଁ ତାକୁ ପିକ୍‌ନିକ୍ ଲାଗି ସାଙ୍ଗରେ ନେଇଆସିଛି ଲିପି ।

ପିକ୍‌ନିକ୍ । କିନ୍ତୁ ଭୋଜି ପାଇଁ ରନ୍ଧନର ଝାମେଲା ନାହିଁ । ଡବାରେ କେକ, କଟଲେଟ୍, କଷା ମାଂସ, ଆଚାର—ସବୁ ସାଙ୍ଗରେ ନେଇଆସିଛି ଲିପି । ଗ୍ଲାସ, ମଗ୍ ମଧ୍ୟ ଆସିଛି । କାଗଜ ତିଆରି ଗ୍ଲାସ୍ ଆଉ ପ୍ଲେଟ୍ । ଖାଇସାରି ଫିଙ୍ଗିଦେଲେ କାର୍ଯ୍ୟ ଶେଷ ।

ଲର୍ଡଙ୍କୁ ଆଜି ଚାରି ପୂରି ପାଞ୍ଚ ଚାଲିଲା ।

ମାତୃତ୍ୱର ଅହଂକାରରେ ଲିପିକା ବେଶ୍ ଗରିୟସୀ ଦେଖାଯାଉଛି । ଗୋଟାଏ ହାଲ୍‌କା ନୀଳ ରଙ୍ଗର ସିଲ୍‌କ ଶାଢ଼ୀ ପିନ୍ଧି ମନେହେଉଛି ଏକ ନୀଳପରୀ ଭଳି । ବେଶ୍ ଲମ୍ବା ଛିପ୍‌ଛାପ୍ ଚେହେରା । ଦେହରେ ଯେଉଁ ଅଂଶରେ ଯେତିକି ପରିମିତ ମାଂସ ରହିଲେ ନାରୀ ରାଜହଂସୀ ଭଳି ଦେଖାଯାଏ, ଲିପିର ଦେହରେ ସେହି ସେହି ସ୍ଥାନରେ ସେତିକି ସେତିକି ମାଂସ । ଆଉ ଗୋଟିଏ ଦୁଇଟି ସନ୍ତାନର ଜନନୀ ହେବା ପର୍ଯ୍ୟନ୍ତ ଏଭଳି ରାଜହଂସୀ ଚେହେରାରେ ଅବକ୍ଷୟର କୌଣସି ସ୍ପର୍ଶ ଲାଗିବାର ସମ୍ଭାବନା ନାହିଁ ।

ଏହାକୁ ହିଁ ବୋଧହୁଏ କୁହାଯାଏ ସ୍ୱାଭାବିକ ସୌନ୍ଦର୍ଯ୍ୟ !

ଲିପି ଠିଆହୋଇ ସିପାହିକୁ ଆଦେଶ ଦେଲା ଭଙ୍ଗୀରେ କହିଲା—ରହେମାନ୍ ! ଫ୍ରୁଟ୍‌ସ ଆଣିବାକୁ ଭୁଲିଯାଇଛି । ଜିପ୍ ନେଇ ଯାଅ । ପାଖରେ ଯେଉଁଠି ମାର୍କେଟ ପାଇବ, କିଛି ଫଳ କିଣି ଆଣ । ଆଉ ବାବୁଙ୍କ ପାଇଁ ଦୁଇ ପ୍ୟାକ୍ ସିଗାରେଟ୍ ମାର୍କା କଅଣ ବୁଝିଯାଅ ।

ରହେମାନ୍ ସାଙ୍ଗରେ ଜିପ୍‌ରେ ଯିବା ପାଇଁ ଲର୍ଡ ଜିଦ୍ କଲା ।

ସେମାନଙ୍କୁ ଟଙ୍କା ଦେଇ ବିଦାୟ କରି ଆସିଲା ଲିପିକା ।

ତା ଆଦେଶ ଦେବାର ମିଲିଟାରୀ କାଇଦାରେ ମୁଗ୍‌ଧ ହୋଇ ମୁଁ କହିଲି—ମହାରାଣୀ । ମତେ ବି କିଛି ଆଦେଶ ହେଉ । ମୁଁ ଆପଣଙ୍କର କି ସେବା କରିପାରେ ?

ଲିପିକା ମୋର ପରିହାସକୁ ବେଶ୍ ଖୁସି ମନରେ ଗ୍ରହଣ କରି ମନ୍ତବ୍ୟ କଲା—ଆପଣ ତ ନାରୀର ଆଦେଶ ପାଳନ କରିବେ ନାଇଁ ବୋଲି ଆଖି ଛୁଇଁ ଶପଥ କରିଛନ୍ତି । ଆଦେଶଦେଲେ କ'ଣ ପାଳନ କରିବେ ? ଏଇ ଧରନ୍ତୁ ଯଦି ମୁଁ ଆପଣଙ୍କୁ କହେ ଯେ—ପ୍ଲିଜ୍ କିସ୍ ମି...

ଲଜ୍ଜାରେ ମୋର ମୁହଁ ଆରକ୍ତ ହେଲା କି ନାହିଁ କହିପାରିବି ନାହିଁ; କିନ୍ତୁ ତା'ର ଆଦେଶ ଶୁଣି ଅପ୍ରତିଭତାରେ ଦୃଷ୍ଟି ମୋର ତଳକୁ ହୋଇଗଲା ।

ମୋ ମୁହଁ ପାଖକୁ ମୁହଁ ଲଗାଇ ଆଣି ଲିପିକା କହିଲା—ଇସ୍, ଚୁମା ଦେବା କଥା ଶୁଣୁ ଶୁଣୁ ଅନଭିଜ୍ଞା କିଶୋରୀଟି ଭଳି ଲାଜେଇ ଯାଉଛନ୍ତି ଯେ ! ସେ ହିପ୍‌ପିଣୀ ଓଠର ଲିପ୍‌ଷ୍ଟିକ୍ କଅଣ ଥରେହେଲେ ନିଜ ଓଠରେ ପୋଛି ନେଇ ନାହାନ୍ତି ?

ମୁଁ ଲିପିକୁ ଶାସନ କଲାଭଳି ତୀକ୍ଷ୍ଣ ସ୍ୱରରେ କହିଲି—ତମେ କଅଣ ମୁହୂର୍ତ୍ତେ ହେଲେ ସେ ହିପ୍‌ପିଣୀକୁ ମନରୁ ଅନ୍ତର କରିପାରୁନାହଁ ! ଗୋଟିଏ ଝିଅକୁ ଅତିରିକ୍ତ ଈର୍ଷା କଲେ ନିଜର ଦୁର୍ବଳତା ଯେ ଖୁବ୍ ସହଜରେ ଧରାପଡ଼ିଯାଏ, ଏକଥା ବି ତମର ଖିଆଲ ରହୁନାହିଁ ?

: ବେଶ୍ ହେଲା । ସେ ଝିଅକୁ ନେଇ ଥଟ୍ଟା କଲେ ଯଦି ମୋର କିଛି ଦୁର୍ବଳତା ଆପଣଙ୍କ ଆଖିରେ ଧରାପଡ଼ିଯାଏ, ସେଥିରେ ମୋର ଦୁଃଖ ନାହିଁ । ଗୋଆକୁ ମାତ୍ର ଚାରିପାଞ୍ଚଦିନ ଆପଣ ବୁଲିଆସିଛନ୍ତି । ଏଠାରେ ମୁଁ ଆପଣଙ୍କର ଏକମାତ୍ର ପରିଚିତା, ପରମାତ୍ମୀୟା ନହେଲେ ବି ଆତ୍ମୀୟା ନାରୀ । ଏଇ କେଇଦିନ ଯଦି ମୋ ଛଡ଼ା ଅନ୍ୟ କୌଣସି ନାରୀ ଆପଣଙ୍କ ସ୍ନେହ ଶ୍ରଦ୍ଧା ଲାଭ କରିବା ଅନ୍ୟାୟ ବୋଲି ମୁଁ ଭାବୁଥାଏ, ସେଇଟା କଅଣ ମୋର ଏତେ ବଡ଼ ଏକ ଅପରାଧ ?

ମୁଁ ଲିପିର କଥାରେ ପ୍ରତିବାଦ କଲି ନାହିଁ । ପ୍ରତିବାଦ କରି ଲାଭ କ'ଣ ? ଆଉ ଦିନ ଦୁଇଟା ପରେ ଗୋଆ ଛାଡ଼ି ମୁଁ ଓଡ଼ିଶା ଫେରିଯିବି । ଆଉ କେବେ ତା ସହିତ ଦେଖାହେବ ନାହିଁ କି କିଛି କହି ହେବନାହିଁ । ଏଇ ଦିନ କେତୋଟି ଯଦି ମତେ ପାଖରେ ପାଇ ସେ କିଛି ଆନନ୍ଦ ପାଉଥାଏ; ମୋ ଉପରେ କର୍ତ୍ତୃତ୍ୱ ଦାବି କରି ଖୁସିହେଉଥାଏ; ସେଥିରେ ମୋର କ୍ଷତି କ'ଣ ?

ମୋର ନୀରବତା ଲକ୍ଷ୍ୟ କରି ସେ ପଚାରିଲା—କଅଣ ଏତେ ମନେ ମନେ ଭାବୁଛନ୍ତି ?

: ଭାବୁଛି, ତମେ ଦୟାପରବଶ ହୋଇ ମତେ ଯେତେ ସ୍ନେହ, ଶ୍ରଦ୍ଧା ଅକୃପଣ ଭାବରେ ଦେଇଦେଇଛ, ସେଥିରେ ଡାକ୍ତର ଚୌଧୁରୀଙ୍କ ପ୍ରାପ୍ୟ ଅଧିକାର ଉପରେ ଆଞ୍ଚ୍ ଆସୁନାହିଁ ତ ?

ମୋର ମନ୍ତବ୍ୟ ଶୁଣି ଲିପି ହସିଲା । ମ୍ଳାନ ହସ ।

କହିଲା—ଜଣେ ପୁରୁଷ ସ୍ୱାମୀତ୍ୱର ଅଧିକାରରେ ଜଣେ ନାରୀର ଆନ୍ତରିକ ସ୍ନେହ ଆଉ ପ୍ରେମର ଅଧିକାରୀ ହୁଏନାହିଁ । ସେଥିପାଇଁ ତାକୁ ଯୋଗ୍ୟ ହେବାକୁ ପଡ଼େ ।

: ତମେ କ'ଣ ଭାବୁଛ ଡାକ୍ତର ଚୌଧୁରୀଙ୍କର ସେଭଳି ଯୋଗ୍ୟତା ନାହିଁ ?

ମୋର ପ୍ରଶ୍ନ ଶୁଣି ଇତସ୍ତତଃ ହେଲା ଲିପିକା ।

କହିଲା—ଠିକ୍ ସେକଥା ମୁଁ କେବେ ଭାବିଚିନ୍ତି ଦେଖିନାହିଁ । ମୁଁ ଓଡ଼ିଆ ଘରର ଝିଅ । ସ୍ୱାମୀଙ୍କୁ ଇହକାଳ ପରକାଳର ଦେବତା ବୋଲି ଧରିନେଇଛି । ଦେବତାମାନଙ୍କର ଦୋଷଗୁଣ ବିଚାର କରାଯାଏ ନାହିଁ । କରାଯାଏ ?

: ସେକଥା ମଧ୍ୟ ମତେ ଜଣାନାହିଁ । କିନ୍ତୁ ତମର ଅକୃତ୍ରିମ ସ୍ନେହ, ସରଳ ସ୍ୱୀକାରୋକ୍ତି ମତେ ବେଳେ ବେଳେ ପୀଡ଼ିତ କରିଛି । ମନେହେଉଛି ଗୋଆ ଭ୍ରମଣରେ ଆସି ତମ ସହିତ ଦେଖା ହୋଇଯିବା ପରେ ତମ ମନରେ କିଛି ପରିମାଣରେ ବିଚଳନ ସୃଷ୍ଟିହୋଇଛି । ମୋ ପ୍ରତି ତମର ଅନୁରାଗ ଡାକ୍ତର ଚୌଧୁରୀଙ୍କ ପ୍ରତି ତମର ଆସକ୍ତିକୁ ଶିଥିଳ କରିଦେଇଛି । ସେଇଟା ଠିକ୍ ମୁଁ ଚାହେଁନାହିଁ ।

ମୋ କଥା ଶୁଣି ଲିପି ମଧ୍ୟ ଖୁବ୍ ବିଚଳିତ ହୋଇପଡ଼ିଲା ।

ଭ୍ରମ ସଂଶୋଧନ କଲାଭଳି ସେ କହିଲା—ମୁଁ ଦୁଃଖିତ; ଆପଣଙ୍କ ମନରେ ଗୋଟାଏ ଭୁଲ ଧାରଣା ସୃଷ୍ଟି କରିଛି । ଡାକ୍ତର ଚୌଧୁରୀଙ୍କୁ ସ୍ଥାନଚ୍ୟୁତ କରି ମୁଁ ଆପଣଙ୍କୁ ସେଠାରେ ବସାଇବାକୁ ଚାହିଁନାହିଁ । ଡାକ୍ତର ଚୌଧୁରୀଙ୍କୁ ବିବାହ କରିଥିଲେ ସୁଦ୍ଧା ଆପଣଙ୍କ ପାଇଁ ମୋ ମନ ଭିତରେ ଏକ ସ୍ୱତନ୍ତ୍ର ସ୍ଥାନ ରହିଛି —ଆପଣଙ୍କ ସହିତ ଦେଖା ହୋଇ ନଥିଲେ ମଧ୍ୟ ସେ ଆସନରୁ କେହି ଆପଣଙ୍କୁ ହଟାଇ ପାରି ନଥାନ୍ତେ ।

ଜିପ୍‌ରେ ଫଳ ଓ ସିଗାରେଟ୍ ନେଇ ଫେରିଆସିଲା ରହେମାନ୍ ।

ଫ୍ଲାସ୍କରୁ ବାମ୍ଫଉଠା ଚା' ବାହାର କରି ବିସ୍କୁଟ ସହିତ ସମସ୍ତଙ୍କୁ ପରିବେଷଣ କଲା ଲିପି । କିନ୍ତୁ ତା ମୁହଁରେ ପୂର୍ବର ସେଇ ବିଷଣ୍ଣତା ଅଠାଭଳି ଲାଗି ରହିଥିଲା ।

ପିଲାର୍ ଉପରେ ଖ୍ରୀଷ୍ଟିୟାନ୍ ମିଶନାରୀମାନଙ୍କ ପ୍ରାଚୀନ ଉପାସନା ମନ୍ଦିର, ଧର୍ମ ଶିକ୍ଷାକେନ୍ଦ୍ର । ପାଦ୍ରିମାନେ ଏଠାରେ ଶିକ୍ଷା ଗ୍ରହଣ କରନ୍ତି । ଗୀର୍ଜାଟି ମଧ୍ୟ ବେଶ୍ ଆଧୁନିକ ଧରଣର । ରହେମାନ ସହିତ ଲର୍ଡ ସେଇ ସବୁ ଦର୍ଶନୀୟ ସ୍ଥାନ ବୁଲିବାକୁ ଗଲା । ସେମାନେ ବୁଲି ଆସିଲାପରେ ଖାଇବା ପିଇବା ପର୍ବ । ଘାସର ଗାଲିଚା ଉପରେ ବିଛାହୋଇଥିବା ସତରଞ୍ଜିରେ ବସି ମୁଁ ସିଗାରେଟ ଟାଣିବାକୁ ଲାଗିଲି ।

ଲିପି ମୋ ପାଖରୁ ସାତ-ଆଠଇଞ୍ଚ ଦୂରରେ ବସି କହିଲା—ପାଗ ଆଜି ବେଶ୍ ଭଲ । ମେଘ ନାହିଁ; କିନ୍ତୁ ମେଘୁଆ ମେଘୁଆ ଲାଗୁଛି । ନା ?

: ତମେ କିନ୍ତୁ ଭାରି ବିଷଣ୍ଣ ଦେଖାଯାଉଛ । ଡାକ୍ତର ଚୌଧୁରୀଙ୍କର ଏ ପିକ୍‌ନିକ୍‌ରେ ଅନୁପସ୍ଥିତ ରହିବା ଉଚିତ ନଥିଲା । ପୁଅର ଜନ୍ମଦିନ ଉତ୍ସବରେ ଡାଡି ଉପସ୍ଥିତ ନରହିଲେ ମମିଙ୍କ ମନ ଖରାପ ହେବା ସ୍ୱାଭାବିକ୍ । ପାଗ ଯେତେ ଭଲ ଥାଉ ନା କାହିଁକି ?

ଲିପି ମତେ ବୁଝାଇବା ଭଳି କୋମଳ କଣ୍ଠରେ କହିଲା—ଗୋଟାଏ କଅଣ ଜରୁରୀ ସରକାରୀ କାମରେ ବାଙ୍ଗାଲୋର୍ ଯାଇଛନ୍ତି । ଆଜିକି ତିନିଦିନ ହେଲା । କାଲି ରାତିରେ ଫେରିବେ ବୋଲି ଆଶା କରୁଥିଲି । ହୁଏତ ଅଫିସ କାମ ସରିଲା ନାହିଁ ।

ତିନିଦିନ ହେଲା ଡାକ୍ତର ଚୌଧୁରୀ ବାଙ୍ଗାଲୋର୍ ଯାଇଛନ୍ତି ? କିନ୍ତୁ ଦୁଇଦିନ ତଳେ ମୁଁ ତାଙ୍କୁ ଅଞ୍ଜନା ବିଚ୍‌ରେ ସେଇ ଅନ୍ତଃସତ୍ତ୍ୱା ବିଦେଶିନୀ ସହିତ ମଟର ସାଇକେଲ୍‌ରେ ଦେଖିଛି ।

ମୋର ମନେହେଲା, ଆମେ ଯେଉଁ ପାହାଡ଼ ଉପରେ ବସି ବଣଭୋଜିରେ ମାତିଛୁ, ସେଇଟା ଏକ ଘୁମନ୍ତ ଆଗ୍ନେୟଗିରି । ଯେ କୌଣସି ମୁହୂର୍ତ୍ତରେ ତା'ର ନିଦ୍ରା ଭାଙ୍ଗିଯାଇପାରେ । ତରଳ ଉତ୍ତପ୍ତ ଲାଭା ଉଦ୍‌ଗୀରଣ କରି ଆମ ସମସ୍ତଙ୍କୁ ସେ ଧ୍ୱଂସ କରିଦେଇପାରେ !

ଅଞ୍ଜନା ବିଚ୍‌ରେ ସେଇ ହିପ୍‌ପି କଟେଜ୍‌ର ମାଲିକ ମୁହଁରୁ ଶୁଣିଥିବା ସନ୍ତାନ-ସମ୍ଭବା ହିପ୍‌ପିଣୀର ଅଭିଯୋଗ ମଧ୍ୟ ମୋର ଗୋଟି ଗୋଟି ହୋଇ ମନେପଡ଼ିଗଲା । ସେ ଅଭିଯୋଗକୁ ସେଦିନ ମୁଁ ସିରିଅସ୍ଲି ନେଇ ନଥିଲି; କିନ୍ତୁ ନିଜ ପତ୍ନୀକୁ ସରକାରୀ କାମରେ ବାଙ୍ଗାଲୋର ଯାଇଛନ୍ତି ବୋଲି କହି ଡାକ୍ତର ଚୌଧୁରୀ ଯେପରି ଭାବରେ ଗୋଆରେ ଆତ୍ମଗୋପନ କରି

ନିଷିଦ୍ଧ ପ୍ରଣୟରେ ଲିପ୍ତ ଅଛନ୍ତି, ସେକଥା ଜାଣିଲା ପରେ ହିପ୍‌ପିଣୀର ଅଭିଯୋଗକୁ ମିଥ୍ୟା ବୋଲି ଭାବିବା ପାଇଁ ମତେ କଷ୍ଟ ହେଲା ।

ମୋର ମୁହଁର ଭାବ ବୋଧହୁଏ ବଦଳିଗଲା ।

ସେ କଥା ଲକ୍ଷ୍ୟ କରି ଲିପି ପଚାରିଲା—ଆପଣଙ୍କ ମୁହଁ ମଳିନ ଦେଖାଯାଉଛି କାହିଁକି ? ଆପଣ କଅଣ ସତରେ ଭାବୁଛନ୍ତି ଡାକ୍ତର ଚୌଧୁରୀ ଏ ପିକ୍‌ନିକ୍‌ରେ ଉପସ୍ଥିତ ନାହାନ୍ତି ବୋଲି ଆମେ ସମସ୍ତେ ମୁହଁ ଶୁଖାଇ ଶୋକ ପାଳନ କରିବା ? ମୁଁ ଏସବୁ ଗତାନୁଗତିକ ଭାବପ୍ରବଣତାରେ ବିଶ୍ୱାସ କରେନାହିଁ । ପୁରୁଷ ପାଇଁ ତା'ର କର୍ତ୍ତବ୍ୟ ବଡ଼, ନାରୀର ସତୀତ୍ୱ ଭଳି । ନିଜ କର୍ତ୍ତବ୍ୟରେ ଅବହେଳା କରି ଡାକ୍ତର ଚୌଧୁରୀ ପୁଅର ଜନ୍ମଦିନ ଉତ୍ସବ ପାଳନ କରିଥିଲେ ମୁଁ ତାଙ୍କୁ କେବେ ହେଲେ କ୍ଷମା କରି ପାରିନଥାନ୍ତି ।

ଲିପିର ଏଇ ଶେଷ ଧାଡ଼ି ମନ୍ତବ୍ୟ ପାଇଁ ମୋ ମନରେ ଭାରି ଗର୍ବ ହେଲା । ଡାକ୍ତର ଚୌଧୁରୀଙ୍କ ପାଇଁ ଦୁଃଖ ହେଲା ଯେ ଏଭଳି ସୁନ୍ଦରୀ, ବୁଦ୍ଧିମତୀ ପତ୍ନୀ ପାଇ ସୁଦ୍ଧା ମରିଚିକା ପଛରେ ଧାଇଁ ଧାଇଁ ସେ ନିଜକୁ ନଷ୍ଟକରିଦେଲେ ।

ନିଜକୁ ନଷ୍ଟକଲାବେଳେ, ତିଳ ତିଳ କରି କ୍ଷୟ କଲାବେଳେ ମଣିଷ ନିଜେ ହିଁ ତାହା ଜାଣିପାରେ ନାହିଁ ।

ଲିପି ଉପରେ ମଧ୍ୟ ମୋର ମାୟା ହେଲା । ଆହା, ବିଚାରୀ ଏ ପର୍ଯ୍ୟନ୍ତ ସେ ଜାଣେ ନାହିଁ ତା'ର ସଜ୍ଜିତ, ପରିପୂର୍ଣ୍ଣ ସଂସାର ଉପରେ ଗୋଟାଏ ଅଶୁଭ ଶକୁନ ପକ୍ଷ ବିସ୍ତାର କରି ଚକ୍‌କର କାଟୁଛି ।

ପାଖକୁ ଘୁଞ୍ଚିଯାଇ ଲିପିର ଡାହାଣ ହାତ ପାପୁଲିକୁ ନିଜ ହାତ ମୁଠା ଭିତରେ ତୋଳିନେଇ ମୁଁ ନିମ୍ନ ସ୍ୱରରେ ପଚାରିଲି—ଲିପି ! ଡାକ୍ତର ଚୌଧୁରୀଙ୍କୁ ବିବାହ କରି କ'ଣ ତମେ ସୁଖୀ ହୋଇନାହଁ ? ତମ ଦୁହିଁଙ୍କ ସ୍ୱାମୀ-ସ୍ତ୍ରୀର ସମ୍ପର୍କରେ କେଉଁଠି କ'ଣ ଫାଙ୍କ ସୃଷ୍ଟି ହୋଇଛି ?

ଭାବିଥିଲି, ମୋର ଏ ପ୍ରଶ୍ନ ଶୁଣି ସେ ତା'ର କଂପିତ, ଘର୍ମାକ୍ତ ପାପୁଲି ମୋ ହାତ ମୁଠା ଭିତରୁ କାଢ଼ିନେବ । ପ୍ରତିବାଦ କରିବ । କହିବ—ନା, ନା, ଏ ସବୁ ଭୁଲଧାରଣା । ଆପଣଙ୍କ ପ୍ରତି ଅନୁରାଗ ପ୍ରକାଶ କରିଛି ବୋଲି, ଆମ ଦାମ୍ପତ୍ୟଜୀବନରେ କେଉଁଠି ଛିଦ୍ର ସୃଷ୍ଟି ହୋଇଛି ବୋଲି ଭାବନ୍ତୁ ନାହିଁ ।

କିନ୍ତୁ ସେ ସେଭଳି କିଛି କଲାନାହିଁ । ମୋ ପାଖକୁ ଆହୁରି ଘୁଞ୍ଚି ଆସି କହିଲା—ଆଜିକାଲି ସାଂସାରିକ ଜୀବନରେ ସୁଖ ବୋଲି କିଛି ଜିନିଷ ନାହିଁ । ସୁଖୀସଂସାରର ଛବି ଅଛି ବହିରେ; ସୁଖୀ ନାୟିକାର ମୂର୍ତ୍ତି ଅଙ୍କାହେଉଛି ଉପନ୍ୟାସରେ । ବାସ୍ତବ ଜଗତରେ ସେଭଳି ଆଉ କିଛି ନାହିଁ । ସେଥିପାଇଁ ବେଳେ ବେଳେ ଆପଣଙ୍କ ଉପନ୍ୟାସର ନାୟିକା ହୋଇଯିବାର ସ୍ୱପ୍ନ ମୁଁ ଦେଖେ । ମଧ୍ୟରାତ୍ରିରେ ନିଶାଗ୍ରସ୍ତ ସ୍ୱାମୀକୁ ବିଛଣାରେ ଶୁଆଇ ସେବା କରିବା ଅପେକ୍ଷା ଅର୍ଦ୍ଧ ରାତ୍ରିରେ ଉପନ୍ୟାସ ଲେଖୁଥିବା ବେଳେ ଆପଣଙ୍କ କାନ୍ଧ ଉପରେ ଝୁଙ୍କିପଡ଼ି ନିଦୁଆ

ଆଖିରେ ଆଲୁଅ ଲିଭାଇବା ପାଇଁ ଅଳି କରିବାକୁ ଇଚ୍ଛା ହୁଏ । କିନ୍ତୁ ମୋର କୌଣସି ଇଚ୍ଛା ପୂର୍ଣ୍ଣ ହୁଏନା । ମୋ ଇଚ୍ଛା ଅନୁସାରେ ଗଛରୁ ଶୁଖିଲା ପତ୍ରଟିଏ ମଧ୍ୟ ଝଡ଼େନା ।

**ସୁଖ ବଡ଼ କାଳ୍ପନିକ ବସ୍ତୁ । ଏ ସବୁ ଗଳ୍ପ, ଉପନ୍ୟାସରେ ଥାଏ । ବାସ୍ତବ ଜୀବନ ବଡ଼ ନିଷ୍ଠୁର । ସୁଖ ତା'ର ସୀମା ସ୍ପର୍ଶ କରିପାରେନା ।**

ଡାକ୍ତର ଚୌଧୁରୀ ଯେ ଏକ ହିପ୍‌ପିଣୀ ଦେହର ପ୍ରେମରେ ପଡ଼ିଛନ୍ତି, ତା'ର ଅବୈଧ ସନ୍ତାନର ଜନକ ହେବାକୁ ଯାଉଛନ୍ତି; ଏ କଥା କଅଣ ଜାଣେ ଲିପିକା ? ଏକଥା ଯଦି ଏଇ ମୁହୂର୍ତ୍ତରେ ମୁଁ କହିଦିଏ; ସେ ଆଘାତ ସେ ସହ୍ୟ କରିପାରିବ ?

ନିଜକୁ ମୁଁ ସମ୍ଭାଳିନେଲି । ମନକୁ ଦୃଢ଼କଲି । ଯଦି ଲିପିକା ସେକଥା ଜାଣି ନଥାଏ; ତାକୁ ଏ ଉତ୍ସବ ମୁହୂର୍ତ୍ତରେ ସେ କୀର୍ତ୍ତି କାହାଣୀ ଶୁଣାଇ ବିସ୍ଫୋରଣ ଘଟାଇବାର କିଛି ମାନେ ହୁଏନା ।

ଆମେ ସମସ୍ତେ ଘୁମନ୍ତ ଆଗ୍ନେୟଗିରି ଉପରେ ବଣଭୋଜିରେ ମାତିଛୁ । ଆଗ୍ନେୟଗିରି ଲାଭା ଉଦ୍‌ଗୀରଣ କରି ବିସ୍ଫୋରିତ ହେବା ଆଗରୁ ବଣଭୋଜି ସାରି ଆମେ ଯଦି ଖସିଯାଇପାରୁ; କ୍ଷତି କ'ଣ ? ଆଜିର ପୃଥିବୀର ସୁଖୀ ହେବା, ବଞ୍ଚି ରହିବା ଗୋଟାଏ ଚାନ୍‌ସର କଥା ।

ଲିପିକାକୁ ସେ ଚାନ୍‌ସ ନେବା ପାଇଁ ଛାଡ଼ିଦେଇ ମୁଁ ଅନ୍ୟ ପ୍ରସଙ୍ଗ ଉଠାଇଲି ।

ଲର୍ଡ ଫେରିଆସି କହିଲା—ମମି ! ଭାରି ଭୋକ...

ଲିପିକା ଭୋଜ୍ୟ ବସ୍ତୁ ପରିବେଷଣ କରିବା ପାଇଁ ଉଠି ଠିଆହେଲା ।

ଆରମ୍ଭ ହେଲା ବଣଭୋଜି ।

ଘୁମନ୍ତ ଆଗ୍ନେୟଗିରିର କେତେବେଳେ ନିଦ୍ରାଭଙ୍ଗ ହେବ ? କେତେବେଳେ କୁଆରୀ ନଦୀର ଜଳ ଉଛୁଳିଆସି ଧୋଇନେବ ପିକ୍‌ନିକ୍‌ର ସବୁ ସୌନ୍ଦର୍ଯ୍ୟ ? କେତେବେଳେ ଲର୍ଡ ନିଦ ଭାଙ୍ଗି ଉଠି କହିବ, ଅଙ୍କଲ୍ ! ଡାଡ଼ି ମମିଙ୍କ ଭିତରେ ଯୁଦ୍ଧ ଲାଗି ଯାଇଛି । ତୃତୀୟ ବିଶ୍ୱ ମହାଯୁଦ୍ଧ !





ତା ମୁହଁରେ ଏକ ଦୁର୍ବୋଧ ବିଷଣ୍ଣତା । ଦୁଃଖର କାରୁକାର୍ଯ୍ୟରେ ମୁହଁଟି ତା'ର ମନେହେଉଛି କେଉଁ ପ୍ରାଚୀନ ମନ୍ଦିରର ପ୍ରସ୍ତର ଖଣ୍ଡ ଭଳି । କଳା ମୁଗୁନିପଥରର ଶିଳାଖଣ୍ଡ ନୁହେଁ; ଧଳା ମାର୍ବଲ ପଥରରେ ତିଆରି ମୁହଁରେ ଦୁଃଖ ଖୋଦିତ ହୋଇଛି କେଉଁ ହୃଦୟହୀନ ଶିଳ୍ପୀର ହାତରେ ।

ଗୋଆରେ ଆଜି ଏ ମୋର ଶେଷ ଦିନ ।

ପାଂଜିମ୍‌ର ପଶ୍ଚିମ ପ୍ରାନ୍ତରେ ପ୍ରାୟ ଆଠକିଲୋମିଟର ଦୂରରେ ଅବସ୍ଥିତ ଏଇ ଡୋନା ପାଓଲାରେ ସୂର୍ଯ୍ୟାସ୍ତ ଦେଖିବାକୁ ମୁଁ ଛୁଟିଆସିଥିଲି । ଟୁରିଷ୍ଟ୍ ବସ୍‌ରେ ପ୍ରଥମ ଦିନ ଏଠାରେ ଦେଖିଥିଲି ସୂର୍ଯ୍ୟୋଦୟ । ଆରବ ସାଗରର ବୁକୁରେ ସୂର୍ଯ୍ୟାସ୍ତର ବର୍ଣ୍ଣ-ମହୋତ୍ସବ ଦେଖିବା ପାଇଁ ଆଜି ପଳାଇଆସିଲି ଡୋନା ପାଓଲା ।

କିନ୍ତୁ ସେଠାରେ ଆଖିପଡ଼ିଲା ପ୍ରଥମେ ମୋର ସହଯାତ୍ରିଣୀ ହିପ୍‌ପିଣୀ ଉପରେ । ଅସ୍ତ ସୂର୍ଯ୍ୟକୁ ପିଠି କରି ଖଣ୍ଡେ ପଥର ଉପରେ ବାମ ହାତ ପାପୁଲିରେ ଗାଲ ରଖି ସେ ବସିରହିଛି ଏକ ପଥରମୂର୍ତ୍ତି ଭଳି ! ଜିନ୍ କିମ୍ବା ଟପ୍ ନାହିଁ; ସ୍କାର୍ଟ ଫ୍ରକ୍ ମଧ୍ୟ ନାହିଁ । ସେ ପିନ୍ଧିଛି ଖଣ୍ଡେ

ଗେରୁଆ ରଙ୍ଗର ତନ୍ତଶାଢ଼ୀ । ବ୍ରା କିମ୍ବା ବ୍ଲାଉଜ୍ ନାହିଁ । ପେଟିକୋଟ୍ ମଧ୍ୟ ପିନ୍ଧିଲା ଭଳି ମନେହେଉନାହିଁ । ଗୈରିକ ତନ୍ତୁଜ ଶାଢ଼ୀର ଅସଂଯତ ସୂକ୍ଷ୍ମ ଆବରଣ ଭେଦ କରି ତା'ର ବର୍ତ୍ତୁଳ ନିତମ୍ବ ରେଖା ଉଗ୍ରଭାବରେ ପ୍ରକଟିତ ହେଉଛି । ତା'ର ବସିବାର ଭଙ୍ଗୀ, ଉଗ୍ର ଶାରୀରିକ ବଣ୍ୟ ଯୌବନ ସତେ ଯେପରି ଧର୍ଷଣ ପାଇଁ ଏକ ଆମନ୍ତ୍ରଣ !

କିନ୍ତୁ ନିହତ ଅପରାହ୍ନର କଳା ଛାଇ ତା ମୁହଁରେ ଦୁର୍ବୋଧ ବିଷଣ୍ଣତାକୁ ଏପରି ଗାଢ଼ ଦୁଃଖରେ ରଂଜିତ କରିଦେଇଛି ଯେ ଦେଖିଲେ କାମଭାବ ଅପେକ୍ଷା କାରୁଣ୍ୟ ବେଶୀ ମନକୁ ଆଲୋଡ଼ିତ କରେ ।

ତା'ର କ'ଣ ହୋଇଛକି ?

ମୁଁ ତାକୁ ଅଞ୍ଜନା ବିଚ୍ ହିପ୍‌ପି-ପଲ୍ଲୀରେ ଛାଡ଼ିଦେଇ ଆସିଥିଲି । ସେ କିପରି ପୁଣି ଆସି ଛିଟିକି ପଡ଼ିଛି ପାହାଡ଼ି ମଞ୍ଚ ଡୋନା ପାଓଲାରେ !

ମତେ ସେ ଦେଖି ଚିହ୍ନି ନପାରିଲା ଭଳି ସେମିତି ବସିରହିଲା ।

ମୁଁ ପଚାରିଲି—ତମର ପୋଷାକପତ୍ର କୁଆଡ଼େ ଗଲା ? ହଠାତ୍ ଶାଢ଼ୀ ପିନ୍ଧିଛ ଯେ !

ମନର ବିହ୍ୱଳଭାବ କାଟି ଅର୍ଦ୍ଧସୁଷୁପ୍ତ ଅବସ୍ଥାରୁ ଉଠିବସିଥିବା ଭଳି ଅଙ୍ଗଭଙ୍ଗୀ କରି ସେ ଉତ୍ତରଦେଲା—ଅଞ୍ଜନା ଫ୍ଲି ମାର୍କେଟରେ ସବୁ ବିକିଦେଇଛି । ପ୍ରାଣ ଯେତେବେଳେ ଇଣ୍ଡିୟାନ୍, ପୋଷାକ ଆମେରିକାନ୍ ରଖି ଲାଭ କ'ଣ ?

ମୋର ଗୋଆରେ ଆଜି ଶେଷ ଦିନ । ମୁଁ ଡୋନା ପାଓଲାର ପାହାଡ଼ି ମଞ୍ଚ ଉପରୁ ଆରବ ସାଗରର ସୂର୍ଯ୍ୟାସ୍ତ ଦେଖିବାକୁ ଆସିଛି । ହିପ୍‌ପିଣୀର ପ୍ରାଣ ଓ ପୋଷାକରେ ଭାରତୀୟତା ଦେଖି ଉଲ୍ଲସିତ ହେବାର ମନ ମୋର ନଥିଲା ।

ମୁଁ ନିଃଶବ୍ଦରେ ତାକୁ ଅତିକ୍ରମ କରି ପାହାଡ଼ି ମଞ୍ଚ ଉପରକୁ ଉଠିଗଲି । ଆରବ ସାଗରର ଢେଉ ଢେଉକା ପାଣିରେ ସୂର୍ଯ୍ୟାସ୍ତର ରକ୍ତିମ ପ୍ରତିମା ଭାଙ୍ଗିଯାଉଛି । ଦୂରରୁ ଦେଖାଯାଉଛି ମାରଗାଓଁ ବନ୍ଦରର ଦୃଶ୍ୟ ।

କିଛି ସମୟ ପରେ ପଛକୁ ଚାହିଁ ଦେଖିଲି, କେତେବେଳେ ନୀରବରେ ଆସି ସେ ମୋ ପଛରେ ଠିଆହୋଇଛି । କିନ୍ତୁ ଆଖିର ଚାହାଣିରେ ତା'ର ନୈସର୍ଗିକ ତୃଷା ନାହିଁ; ଦୃଷ୍ଟି ତା'ର ଭାସମାନ ଲଘୁପକ୍ଷ ମେଘଖଣ୍ଡ ଭଳି, ଶୂନ୍ୟ, ଉଦାସ ।

: ଧ୍ୟାନ ଭଗ୍ନହେଲା ?

: ହୁଁ । —ସେ ସଂକ୍ଷେପରେ ଗୋଟାଏ ଅସ୍ପଷ୍ଟ ଶବ୍ଦ କଲା ।

: କଅଣ ଭାବୁଥିଲ ବସି ବସି ?

: ସେଇ ଆମେରିକାନ୍ ସୈନିକ କଥା, ସିଏ ଦିନେ ନିଜର ଘର୍ମାକ୍ତ ଆଙ୍ଗୁଠି, ସଜଳ ଓଠର ସ୍ପର୍ଶରେ ମୋ କୁମାରୀ ଦେହର ନିଦ ଭାଙ୍ଗିଦେଇଥିଲା ।

ଜଣେ ମୃତ ସୈନିକର ଉପସ୍ଥିତି ଆମ ଦୁହିଙ୍କ ମଝିରେ ଅନୁଭବ କରି ମୋ ଦେହର ରକ୍ତ ସଂଚାଳନ ଦୃଢ଼ତର ହୋଇଗଲା । ଈର୍ଷାରେ ? ଠିକ୍ ଜାଣେନା ।

କିଛି ସମୟ ପରେ କେଉଁ ଧର୍ମଯାଜକ ଆଗରେ ନିଜ ପାପର ସ୍ୱୀକାରୋକ୍ତି ପ୍ରକାଶ କରୁଥିବା ଭଳି ସେ କହିଲା— ଜାଣନା, ସେଇ ସୈନିକର ଅଭାବକୁ ଭୁଲିବା ପାଇଁ ମୁଁ ଅନେକ ପୁରୁଷ ଦେହ ସହିତ ଘନିଷ୍ଠ ହୋଇଛି । ଆମେରିକାନ୍, ୟୁରୋପୀୟାନ୍, ଆରବ, ଇଣ୍ଡିୟାନ, ନେପାଳୀ –କେତେ ଜାତି, କେତେ ଦେଶର ପୁରୁଷଙ୍କ ସହିତ ଶାରୀରିକ ଖେଳରେ ମାତିଛି । କିନ୍ତୁ ସବୁ ସମ୍ଭୋଗ ସ୍ୱାଦହୀନ । ମୁଁ ବୁଝିଯାଇଛି, ଜଣକର ଅଭାବ ଅନ୍ୟଜଣକୁ ବ୍ୟବହାର କରି ପୂରଣ କରାଯାଇପାରେନା ।

ଜଣେ ମୃତ ଲୋକ ପ୍ରତି ଆସକ୍ତି ମତେ ଖୁବ୍ ଖୁସି କଲାନାହିଁ । ମୁଁ ଚୁପ୍ ହୋଇ ତାରଗାଓଁ ବନ୍ଦରରେ ବିଜୁଳିବତି ଜଳିଉଠୁଥିବାର ଦୃଶ୍ୟ ଦେଖିବାକୁ ଲାଗିଲି ।

ସେ କିନ୍ତୁ ମୋର ନିର୍ଲିପ୍ତ ନୀରବତା ପ୍ରତି ଭ୍ରୂକ୍ଷେପ କଲାନାହିଁ ।

ମନେ ମନେ ସ୍ୱଗତୋକ୍ତି କଲାଭଳି କହିଚାଲିଲା—ହାୟ ! ଛୁଟି ଶେଷରେ ଯୁଦ୍ଧକ୍ଷେତ୍ରକୁ ବାହାରିଲାବେଳେ କେତେଥର ମୁଁ ତାକୁ କହିଛି, ବନ୍ଧୁକର ନଳୀ ରାଜନୈତିକ କ୍ଷମତାର ଉତ୍ସ ହୋଇପାରେ, କିନ୍ତୁ ଚିଲମର ନଳୀ ଶାନ୍ତିର ଏକମାତ୍ର ଉତ୍ସ । ବନ୍ଧୁକ ଫିଙ୍ଗିଦେଇ ହାତରେ ଚିଲମ ଟୋକିନିଅ । ଯେ ପ୍ରକୃତରେ ପ୍ରେମିକ ସେ କେବଳ ଗୋପନରେ ବନ୍ଧୁକର ନଳୀ ସଫାକରେନା । କିନ୍ତୁ ସେ ମୋ କଥା ଶୁଣିଲା ନାଇଁ ।

. ତା'ପରେ ହିପ୍‌ପିଣୀର ଏକ ତପ୍ତ ଦୀର୍ଘଶ୍ୱାସ ।

ମୁଁ ଈଷତ୍ ବିରକ୍ତ ହୋଇ କହିଲି— ଜଣେ ମୃତ ସୈନିକ ପ୍ରତି ମୋର ସମ୍ମାନ ଅଛି, କିନ୍ତୁ ଆକର୍ଷଣ ନାହିଁ । ସେ ମୃତ ସୈନିକ କଥା ଭାବି ଭାବି ତମେ ତମର ଜୀବନକୁ ନିଶାର ଧୂଆଁରେ ପୋଡ଼ି କଳା କରିଦେଇଛ ; ତା କଥା ବାରମ୍ବାର କହି ମୋର ମୁଡ୍‌କୁ ଆଉ ନଷ୍ଟ କର ନାହିଁ ।

ମୋ କଣ୍ଠସ୍ୱରରେ କିଛି ପରିମାଣରେ ଅମାନୁଷିକ ରୁକ୍ଷତା ଭରିରହିଥିଲା । ମୁଁ ଭାବିଥିଲି ମୋ କଥା ଶୁଣି ସେ ପୁଣି ଶିଳାଖଣ୍ଡ ଉପରକୁ ଫେରିଯିବ । ପଥର ମୂର୍ତ୍ତିଭଳି ବସି ରହି ସ୍ମୃତି ଚାରଣ କରିବ । କିନ୍ତୁ ତାଠାରେ ସେଭଳି କିଛି ଭାବାନ୍ତର ପରିଲକ୍ଷିତ ହେଲାନାହିଁ ।

ସେ କହିଲା—ଜାଣନା, ମୋର ମନେହେଉଛି, ଭିଏତକଙ୍ଗ୍ ଗରିଲାମାନଙ୍କ ହାତରେ ସେ ମରିନାହିଁ । ମୋ ପ୍ରେମରେ ପଡ଼ିଲା ପରେ ଯୁଦ୍ଧ ପ୍ରତି ତା'ର ଏକ ବିତୃଷ୍ଣା ଆସିଯାଇଥିଲା ସେ ମତେ ତା'ର ଶେଷ ଚିଠିରେ ଲେଖିଥିଲା, ଦାଦାଓମି !

: ଦାଦାଓମି ? ଏହାର ଅର୍ଥ କ'ଣ ?

: ଏହି ଭିଏତନାମୀ ଶବ୍ଦର ଅର୍ଥ ହେଉଛି, ଆମେରିକା ମୁର୍ଦ୍ଧାବାଦ୍ ! —ହିପ୍‌ପିଣୀ ଭିଏତନାମୀ ଶବ୍ଦର ହିନ୍ଦୀ ଅନୁବାଦ କରି ହସିବାକୁ ଲାଗିଲା ।

ବହୁ ଆମେରିକା ସୈନ୍ୟ ଶେଷଆଡ଼କୁ ଭିଏତନାମ ଯୁଦ୍ଧର ବିରୋଧ କରିଥିଲେ । ଆମେରିକା ପ୍ରାଚୁର୍ଯ୍ୟର ଦେଶ । ଜୀବନକୁ ପରିପୂର୍ଣ୍ଣ ଭାବରେ ଉପଭୋଗ କରିବା ପାଇଁ ସକଳ ସାମଗ୍ରୀ ସେଠାରେ ଭରପୂର । କଳା କିମ୍ବା ବାଦାମୀ ରଙ୍ଗର ଏସୀୟ ଲୋକଙ୍କ ପାଇଁ ଅସ୍ୱାସ୍ଥ୍ୟକର ପରିବେଶରେ ମୃତ୍ୟୁବରଣ କରିବା ଲାଗି ସେମାନଙ୍କ ମଧ୍ୟରେ ଅନିଚ୍ଛା, ବିତୃଷ୍ଣା ଦେଖାଦେବା ସ୍ୱାଭାବିକ । ସେଥିପାଇଁ ଅନେକ ଅନିଚ୍ଛୁକ ଆମେରିକାନ୍ ସୈନ୍ୟ ସାଏଗନ୍ ଅଭିମୁଖେ ଯାତ୍ରା କରୁଥିବାବେଳେ ସାମରିକ ଶୃଙ୍ଖଳା ଭଙ୍ଗ କରି ଜାହାଜରୁ ସମୁଦ୍ର ମଝିକୁ ଲମ୍ଫ ଦେଉଥିବା ସମ୍ବାଦ ମୋର ଆଖିରେ ମଧ୍ୟ ପଡ଼ିଥିଲା । ମୁଁ ସେ ସମ୍ବାଦ ସମ୍ପୂର୍ଣ୍ଣ ବିଶ୍ୱାସ କରି ନଥିଲି । ଆମେରିକା ବିରୁଦ୍ଧରେ ଏସବୁ କମ୍ୟୁନିଷ୍ଟମାନଙ୍କ କାଳ୍ପନିକ ମିଥ୍ୟା ପ୍ରଚାର ବୋଲି ମୋର ସନ୍ଦେହ ହୋଇଥିଲା; କିନ୍ତୁ ହିପ୍‌ପିଣୀର କଥା ଶୁଣି ସେ ସମ୍ବାଦ ସତ୍ୟ ହୋଇଥିବ ବୋଲି ମୋର ମନରେ ପ୍ରତ୍ୟୟ ସୃଷ୍ଟିହେଲା ।

: ତାହାହେଲେ ଶେଷ ମୁହୂର୍ତ୍ତରେ ତମର ପ୍ରେମିକ ବିଦ୍ରୋହୀ ସୈନିକ ଭାବରେ ନିଜ ଦେଶର ସାମରିକ ଅଭିଯାନର ବିରୋଧ କରିଥିଲା । କିନ୍ତୁ ତା'ର ଏ ଦେଶଦ୍ରୋହ ସମ୍ବାଦ କ'ଣ ଆମେରିକା ସାମରିକ ଗୋଏନ୍ଦା ବିଭାଗର ଦୃଷ୍ଟି ଏଡ଼ାଇ ପାରିଥିବ ? ଭିଏତ୍‌କଙ୍ଗ୍ ଗରିଲାମାନଙ୍କ ହାତରେ ନହେଲେ ଆମେରିକା ସାମରିକ ବିଚାରାଳୟର ଆଦେଶରେ ଆମେରିକା ଦେଶ ଭକ୍ତ ସୈନିକଙ୍କ ହାତରେ...

ହିପ୍‌ପିଣୀ ମୋ କଥାର ପ୍ରତିବାଦ କଲା ।

କହିଲା— ଅନେକ ଆମେରିକା ସୈନ୍ୟ ଭିଏତକଙ୍ଗ୍ ଗରିଲା ଘାଟି ଉପରେ ଆକ୍ରମଣ କରିବା ପାଇଁ ଭିଏତନାମର ଗ୍ରାମାଞ୍ଚଳକୁ ଯାଇ ଫେରିନାହାନ୍ତି । ଆମେରିକା ସାମରିକ ବିଭାଗ ସେମାନଙ୍କ ନାମ ମୃତ ସୈନିକଙ୍କ ତାଲିକାରେ ଲେଖିଦେଇଥିଲେ ମଧ୍ୟ ସେମାନେ ସମସ୍ତେ ପ୍ରକୃତରେ ମୃତ ନୁହନ୍ତି । କିଏ ଜାଣେ, ସତକୁ ସତ ଦିନେ ହୁଏତ ମୋର ଉପଦେଶ ସେ ମାନିଥିଲା । କାନ୍ଧରୁ ବନ୍ଧୁକ ଫିଙ୍ଗିଦେଇ ହାତରେ ସେ ଚିଲମ ଟେକିନେଇଥିଲା । ଖାକି ପୋଷାକ ବଦଳରେ ପିନ୍ଧିଥିଲା ଗୈରିକ ବସନ । ଭିଏତନାମର ଭୌଗୋଳିକ ସୀମା ଅତିକ୍ରମ କରି ସେ ପ୍ରକୃତ ସୁଖର ସନ୍ଧାନରେ ଚାଲିଆସିଥିଲା ଇଣ୍ଡିଆ, ନେପାଳ କିମ୍ବା ସିଂହଳ ।

ନିଜକୁ ବୁଝାଇବା ପାଇଁ ଏ ହୁଏତ ତା'ର ଏକ କାଳ୍ପନିକ ସ୍ୱପ୍ନ । କଳ୍ପନା କରିବା ପାଇଁ କିମ୍ୱା ସ୍ୱପ୍ନ ଦେଖିବା ପାଇଁ କାହାକୁ ମନାନାହିଁ । ଏଥିପାଇଁ ସରକାରଙ୍କୁ ଟିକସ ଦେବାକୁ ମଧ୍ୟ ପଡ଼େନାହିଁ । ମୁଁ ସେଥିପାଇଁ ହିପ୍‌ପିଣୀ କଥାର ପ୍ରତିବାଦ କଲିନାହିଁ ।

ଗୋଆରେ ଏ ମୋର ଶେଷ ଦିନ । କାଲି ମୁଁ ବାଙ୍ଗାଲୋର ବାଟେ ମାଡ୍ରାସ୍ ଏବଂ ସେଠାରୁ ଓଡ଼ିଶା ଫେରିଯିବି । ଜଣେ ମୃତ ସୈନିକ ଅଥବା ଜୀବନଭୀରୁ ପଳାତକ ସୈନିକ ସମ୍ପର୍କରେ ଅକାରଣ କୌତୂହଳ ମତେ କୌଣସି ମତେ ଉଚ୍ଚାଟିତ କଲାନାହିଁ ।

ସଂଧ୍ୟା ହୋଇଆସୁଛି ।

ଆରବ ସାଗରର ତରଙ୍ଗାୟିତ ନୀଳ ଜଳ ଉପରୁ ସମାପ୍ତ ସୂର୍ଯ୍ୟର ଶେଷ ରଶ୍ମିରେଖା ଲିଭିଗଲାଣି । ରାସ୍ତା ଉପରେ ବିଜୁଳିବତୀ ଜଳିଉଠିଲାଣି । ଡୋନା ପାଓଲାର ଲାଣ୍ଡସ୍କେପ୍ ଆସ୍ତେ ଆସ୍ତେ ବଦଳିଯାଉଛି । ପରିବେଶ ମଧ୍ୟ କ୍ରମଶଃ ନିର୍ଜନ ଓ ଶୀତଳ ହୋଇଆସୁଛି ।

ଅନ୍ୟମନସ୍କ ଭାବରେ ସମୁଦ୍ର ଆଡକୁ ଚାହିଁ ରହି ଠିଆ ହୋଇଛି ବିଦେଶିନୀ ।

ମୁଁ ତାକୁ ବିଦାୟ ସମ୍ଭାଷଣ ଜଣାଇବା ପାଇଁ କହିଲି—କାଲି ମୁଁ ଫେରିଯାଉଛି । ଆଜି ତମ ସହିତ ଏଇଟା ହୁଏତ ମୋର ଶେଷ ଦେଖା ।

ମୋର କଥା ଶୁଣି ତା'ର ଦୁଇ ଆଖିର ତାରକାରେ ଏକ ନୀଳାଭ ଚଞ୍ଚଳତା ସୃଷ୍ଟି ହେଲା; କିନ୍ତୁ ବିଦାୟକାଳୀନ ବ୍ୟଥା କିମ୍ୱା ବିଷାଦର କୌଣସି ଛାୟା ତା'ର ମୁହଁକୁ ଆଚ୍ଛନ୍ନ କଲାନାହିଁ ।

ସେ ପରିଚ୍ଛନ୍ନ ଇଂରେଜୀରେ କହିଲା—ଏଇ କେଇଦିନର ସମ୍ପର୍କ ଆମ ଦୁହିଙ୍କ ଭିତରେ ଏକପ୍ରକାର ଆତ୍ମୀୟତା ଆଣିଦେଇଥିଲା । ଆପଣ ଚାଲିଯାଉଛନ୍ତି ଜାଣି ସେଥିପାଇଁ ମୋର ମନ କଷ୍ଟ ହେବା କଥା; କିନ୍ତୁ ମୁଁ ମନ କଷ୍ଟ କରିବି ନାହିଁ । କାରଣ ଆପଣଙ୍କ ସହୃଦୟତାରେ କୌଣସି ସ୍ୱାର୍ଥପରତା ନଥିଲା । ଇଣ୍ଡିଆର ଆତ୍ମାକୁ ଆପଣ ଅନେକ ପରିମାଣରେ ସଠିକ୍ ଭାବରେ ମତେ ଚିହ୍ନାଇଦେଇଛନ୍ତି । ଇଣ୍ଡିୟାନ୍‌ମାନଙ୍କ ସମ୍ପର୍କରେ ଅନେକ ଭୁଲ ଧାରଣା ଭାଙ୍ଗି ଦେଇଛନ୍ତି । ଏ କଥା ମୋର ମନେରହିବ ।

ତା'ର କଥା ମୁଁ ନୀରବରେ ଶୁଣିଲି । ତା'ର ପ୍ରଶଂସାରେ ଖୁସିହେବାର କିଛି ନଥିଲା । ସେ ଇଣ୍ଡିୟା ଏବଂ ତା'ର ଆତ୍ମା ସମ୍ପର୍କରେ ବିଶେଷ ଅବା କ'ଣ ଜାଣେ ? ସେ ନିଜେ ଏକ ଅସ୍ଥିର ସମୟର ଫେନିଳ ଉଚ୍ଛ୍ୱାସ । ଦେହ ଓ ମନକୁ ପ୍ରତିଟି ମୁହୂର୍ତ୍ତରେ ଉତ୍ତେଜିତ କରି ରଖିବାକୁ ଯାଇ ସେ କ୍ରମଶଃ ଶୀତଳ, ବରଫଖଣ୍ଡ ପାଲଟିଯାଇଛି ।

ମୋର ହଠାତ୍ ଖିଆଲହେଲା, ଅନେକ ସମୟ ଧରି ସେ ଚରସ୍ ଭର୍ତ୍ତି ସିଗାରେଟ୍ କିମ୍ବା ଚିଲମ ଟାଣିନି । ମରାଫିନ୍ କିମ୍ବା ହେରୋଇନ୍ ଇଂଜେକସନ୍ ମଧ୍ୟ ନେଇନି । ଅଥଚ ଏ ସବୁଥିରେ ବିଳମ୍ବ ହେଲେ ସେ କିପରି ଉନ୍ମାଦିନୀ ହୋଇଉଠେ, ତାହା ମୁଁ ଲକ୍ଷ୍ୟକରିଛି ଅନେକ ଥର ।

ମୁଁ ତାକୁ ମନେପକାଇଦେଲି—ତମର ନିଶା କରିବାର ବେଳ ଯେ ହୋଇଗଲା ! ତମେ କ'ଣ ଇଂଜେକସନ୍ ନେଇ ସାରି ଏଠାକୁ ଆସିଥିଲ !

ହିପ୍‌ପିଣୀ ଏଥର ମତେ ଚମକାଇଦେଲା ।

କହିଲା—ଛାଡ଼ିଦେଇଛି । ଚିଲମ, ସିରିଂଜ୍ ସବୁ ଫ୍ଲି ମାର୍କେଟରେ ବିକ୍ରି କରିଦେଇଛି । ଜାଣନ୍ତି , ଧୂଆଁ ଟାଣିଲେ, ଇଂଜେକସନ୍ ନେଲେ ଆଉ ନିଶା ଧରେନା । ଛାତି ଭିତରେ ଯନ୍ତ୍ରଣା ହୁଏ । ଭାରି ଦୁର୍ବଳ ଲାଗେ । କିଛି ଭଲଲାଗେନା ।

: ଏ ତ ଘର ଫେରନ୍ତା ସୁନା ଝିଅଟି ଭଳି କଥା ! ଏ କଥାଟା ଆଗରୁ ଅନେକ ଥର ଉପଦେଶ ଛଳରେ ଶୁଣିଥିବ, କାନ ଦେଇ ନଥିଲ କାହିଁକି ? —ମୁଁ ଖୁବ୍ ଖୁସି ହୋଇ କହିଲି ।

ସେ ଉତ୍ତରଦେଲା—ଆଗରୁ ପଟ୍, ଗ୍ରାସ୍, ଏସିଡ୍, ଟ୍ରିପ୍— ଏସବୁ ସ୍ନାୟୁଗ୍ରନ୍ଥି, ରକ୍ତକୋଷକୁ ସ୍ପର୍ଶ କରିବା ମାତ୍ରେ ମୁଁ ଖୁବ୍ ଉତ୍ତେଜନା ଅନୁଭବ କରୁଥିଲି । କିକ୍...ଟ୍ରେମେଣ୍ଡାସ୍ କିକ୍ ! କିନ୍ତୁ ଆଜିକାଲି ସେଭଳି ଅନୁଭୂତି ହୁଏନା । ଏପରିକି ପୁରୁଷ ସହିତ ଶାରୀରିକ ଖେଳରେ ଲିପ୍ତ ହେଲେ ମଧ୍ୟ ମୁଁ ଆଜିକାଲି କୌଣସି ଶିହରଣ, ଆବେଗ, ଉତ୍ତେଜନା ଅନୁଭବ କରେନା । ପୁରୁଷର ସମ୍ଭୋଗ ନାରୀକୁ ଦେଇପାରେ ଖୁବ୍ ବେଶୀ ହେଲେ ସାତମିନିଟ୍‌ର ସାମୟିକ ଉତ୍ତେଜନା...ତା'ପରେ ପ୍ରତି ପୁରୁଷ ମନେହୁଅନ୍ତି ଗୋଟାଏ ଗୋଟାଏ ଫୁଟା ବେଲୁନ୍ । ଫୁଟା ବେଲୁନ୍‌କୁ ନେଇ କି ଖେଳ ଖେଳାଯାଇପାରେ...? ବିରକ୍ତି, ବିତୃଷ୍ଣାରେ ମନ ଭରିଯାଏ...

ହିପ୍‌ପିଣୀର ମୁହଁରେ ବିରକ୍ତି ମୁଦ୍ରା ଫୁଟିଉଠିଲା ।

ସୁଖର ଅନ୍ୱେଷଣରେ ବାହାରିଥିବା ବିଦେଶିନୀ ବ୍ୟର୍ଥତାର ଟାୱାର୍ ଉପରେ ଠିଆହୋଇ କୃଷ୍ଣ ପିଙ୍ଗଳ ଦୃଷ୍ଟିରେ ଧୂସର ପୃଥିବୀକୁ ଚାହିଁ ହତାଶାରେ ଦୀର୍ଘଶ୍ୱାସ ଛାଡୁଛି । ତା ପାଇଁ ରାସ୍ତା ଏଇଠି ଶେଷ । ସେ ଯିବ କୁଆଡ଼େ ।

ମୁଁ ହିପ୍‌ପିଣୀର ସେ ବ୍ୟର୍ଥତାକୁ ବେଶ୍ ମନେ ମନେ ଉପଭୋଗ କରୁଥିଲି ।

ସେ କିଛି ସମୟ ଏଣିକି ତେଣିକି ଚାହିଁ କହିଲା—ପ୍ରେମ ହିଁ ମଣିଷକୁ ଶାନ୍ତି ଦେଇପାରେ; କିନ୍ତୁ ଡ୍ରଗ୍‌ସ୍‌ର ନିଶା ପ୍ରେମ ନୁହେଁ, ସେକ୍‌ସ ମଧ୍ୟ ପ୍ରେମ ନୁହେଁ । ପ୍ରେମ ଜଣକ ପାଇଁ ଅନ୍ୟ ଜଣକ ଲାଗି ବ୍ୟାକୁଳ ଆକର୍ଷଣ । ଏଇ ବ୍ୟାକୁଳତା ହିଁ ଦେହ ମନକୁ ଉତ୍ତେଜିତ କରି ରଖେ । ଏ ଉତ୍ତେଜନା କେବେହେଲେ ଶୀତଳ ହୁଏନା...

କଥା କହିବା ମଝିରେ ସେ ମୋ ପାଖକୁ ଲାଗିଆସିଥିଲା । ମତେ ଗୁରୁମନ୍ତ୍ର ଦୀକ୍ଷା ଦେଉଥିବା ଭଳି ମୋ କାନ ପାଖକୁ ମୁହଁ ଆଣି କହିଲା— ଏ ଜାଗାଟାର ନାମ ଯାହାର ନାମରେ ଡୋନା ପାଓଲା ରଖାହୋଇଛି, ତା କଥା ଜାଣନ୍ତି ?

ମୁଁ ଚକିତ କଣ୍ଠରେ କହିଲି—ନା, କିଛି ଜାଣେନା ।

ସେ କହିଲା—ଡୋନା ପାଓଲା ଥିଲା ଜଣେ ପର୍ତ୍ତୁଗୀଜ୍ ଭାଇସରାୟ... ଗୋଆର ପର୍ତ୍ତୁଗୀଜ ଶାସନକର୍ତ୍ତାଙ୍କ ଅଲିଅଳ କନ୍ୟା...ଗାସ୍‌ପର ଡିଆସ୍ ନାମକ ଜଣେ ଗୋଆର ସାଧାରଣ ନାଗରିକର ପ୍ରେମରେ ସେ ପଡ଼ିଥିଲା । ସର୍ବଶକ୍ତିମାନ ପର୍ତ୍ତୁଗୀଜ୍ ଭାଇସରାୟଙ୍କ କାନରେ ଏକଥା ପଡ଼ିଲା ପରେ କ୍ରୋଧରେ ସେ ଫାଟିପଡ଼ିଥିଲେ... । ଡୋନା ଭାଇସରାୟଙ୍କ ପ୍ରାସାଦ ଛାଡି ଯେପରି ବାହାରକୁ ଆସି ନପାରେ ସେଥିପାଇଁ କଡ଼ା ପହରାର ବ୍ୟବସ୍ଥା କରିଥିଲେ... । ତାର ପ୍ରେମିକ ଡିଆସ୍‌କୁ ମଧ୍ୟ ତା ସହିତ ଦେଖା କଲେ ପ୍ରାଣଦଣ୍ଡ ଦିଆଯିବ ବୋଲି ଆଦେଶ ଦିଆଯାଇଥିଲା...; କିନ୍ତୁ ଦୁଇଟି ପ୍ରଣୟପାଗଳ ହୃଦୟକୁ କଅଣ ରାଜକୀୟ ଆଦେଶର ଶୃଙ୍ଖଳରେ ବାନ୍ଧି ରଖାଯାଇପାରେ ? ଦିନେ ସତର୍କ ପ୍ରହରୀମାନଙ୍କ ଦୃଷ୍ଟିକୁ ଫାଙ୍କି ଦେଇ ଡୋନା ଏଇ ପାହାଡ଼ି ମଞ୍ଚ ଉପରେ ତାର ପ୍ରଣୟୀକୁ ଭେଟିବ ବୋଲି ଜଣେ କୈବର୍ତ୍ତ ପରିଚାରକ ହାତରେ ଖବର ପଠାଇଥିଲା । ଅର୍ଦ୍ଧରାତ୍ରିରେ ସମସ୍ତଙ୍କ ଦୃଷ୍ଟିର ଅଲକ୍ଷ୍ୟରେ ଚାଲିଆସିଥିଲା ସେ ଏଇ ଉଚ୍ଚ ପାହାଡ଼ ଶିଖର ଉପରକୁ । ତା'ର ପ୍ରଣୟୀ ସହିତ ତା'ର ମିଳନ ହୋଇଥିଲା କି ନାହିଁ; ତାର କେହି ସାକ୍ଷୀ ନାହାନ୍ତି । କିନ୍ତୁ ତା ଆରଦିନ ପର୍ତ୍ତୁଗୀଜ୍ ଭାଇସରାୟଙ୍କ ପ୍ରାସାଦକୁ ଡୋନା ପାଓଲା ଆଉ ଫେରିନଥିଲା... ସେଇ ନିରୁଦ୍ଦିଷ୍ଟ ପ୍ରଣୟିନୀର ନାମରେ ଏହାର ନାମ ହୋଇଛି ଡୋନା ପାଓଲା !

ହିପ୍‌ପିଣୀର କଥା ଶୁଣି ମୁଁ ଉଚ୍ଚକିତ ହୋଇଉଠିଲି ।

ଯେଉଁ ପାହାଡ଼ି ମଞ୍ଚ କିଛି ସମୟ ଆଗରୁ ମୋ ପାଖରେ ଥିଲା ଆରବ ସାଗର ସୂର୍ଯ୍ୟାସ୍ତ, ମାରଗାଓଁ ବନ୍ଦର ଆଉ ପାଲାସିଓ ଡେ କାବୋ ବା ଗଭର୍ଣ୍ଣରଙ୍କ ବାସଭବନର ଦୃଶ୍ୟ ଦେଖିବାର ଏକ ଉପଯୁକ୍ତ ସ୍ଥାନ; ସେ କିମ୍ବଦନ୍ତୀ ଶୁଣିଲା ପରେ ତାହା ମୋ ପାଇଁ ହଠାତ୍ ପ୍ରଣୟର ସ୍ମୃତିତୀର୍ଥରେ ପରିଣତ ହୋଇଗଲା ।

ବିଦେଶିନୀ ମୋ କାନ୍ଧ ଉପରେ ମୁହଁ ରଖି କହିଲା—ନାରୀ ପକ୍ଷରେ ଜଣେ ପୁରୁଷ ପାଇଁ ବ୍ୟାକୁଳ ହୃଦୟରେ ଅପେକ୍ଷା କରିବା ଭଳି ମଧୁମୟ ଅନୁଭୂତି ଆଉ କିଛି ନାହିଁ । ଏହାହିଁ ତା ପାଇଁ ଚରମ ଉତ୍ତେଜନା, ପରମ ସୁଖର ଅନନ୍ତ ଉପଲବ୍ଧି ।

ମୋର ଦୁଇ ହାତ ପାପୁଲିରେ ତା ମୁହଁକୁ ତୋଳି ନେଇ ଦେଖିଲି, ବିନ୍ଦୁ ବିନ୍ଦୁ ଅଶ୍ରୁରେ ତା'ର ଦୁଇ ଆଖିପତା ଭରି ଯାଇଛି । କିନ୍ତୁ ତା ମୁହଁରେ ଝଲସିତ ହେଉଛି ଏକ ଅପୂର୍ବ ଦୀପ୍ତି । ଦୈହିକ ସମ୍ଭୋଗ, କୃତ୍ରିମ ନିଶାର ଲୌକିକ ସ୍ତର ଅତିକ୍ରମ କରି ଏକ ଅଲୌକିକ ଆଲୋକିତ ଜଗତରେ ସେ ଯେପରି ପ୍ରବେଶ କରିଛି ।

ଏକ ଆଧ୍ୟାତ୍ମିକ ଆନନ୍ଦରେ ସେ କାନ୍ଦୁଛି । ତା'ର ହସର ସମୁଦ୍ରରେ ଅଶ୍ରୁର ନଦୀ ମିଶି ଯାଇ ତା'ର ମୁହଁକୁ ଏକ ରହସ୍ୟମୟ ଔଜ୍ଜ୍ୱଲ୍ୟରେ ଭରିଦେଇଛି ।

ଡୋନା ପାଓଲାର ପୁନର୍ଜନ୍ମ ଘଟିଛି ।

ତା ୧୧.୫.୧୯୮୦

ଭୁବନେଶ୍ୱର

